


# ଶିକ୍ଷକ ସାଥୀ

## ତୃତୀୟ ଶ୍ରେଣୀ

(ତୃତୀୟ ଶ୍ରେଣୀ ପାଇଁ ପରିବେଶ ଅଧ୍ୟୟନ ପୁସ୍ତକ 'ଜଣା ଅଜଣା' ର ଶିକ୍ଷକ ସହାୟକ ପୁସ୍ତକ)

ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ

**ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ**

ଓଡ଼ିଶା, ଭୁବନେଶ୍ୱର

Digitized by PPRACHIN, SOA

# ଶିକ୍ଷକ ସାଥୀ

(ତୃତୀୟ ଶ୍ରେଣୀ ପାଇଁ ପରିବେଶ ଅଧ୍ୟୟନ ପୁସ୍ତକ
'ଜଣା ଅଜଣା' ର ଶିକ୍ଷକ ସହାୟକ ପୁସ୍ତକ)

ତୃତୀୟ ଶ୍ରେଣୀ

ପ୍ରକାଶନ ସମୟ - ୨୦୦୨

ଲେଖକ ମଣ୍ଡଳୀ :
ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷଙ୍କ
ଦ୍ୱାରା ନିଯୁକ୍ତ ଲେଖକ ମଣ୍ଡଳୀ

ପ୍ରକାଶକ :
ପ୍ରକଳ୍ପ ନିର୍ଦ୍ଦେଶକ,
ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ
ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ଭୁବନେଶ୍ୱର

ମୁଦ୍ରଣ :
ସରକାରୀ ପାଠ୍ୟପୁସ୍ତକ ମୁଦ୍ରଣାଳୟ
ଭୁବନେଶ୍ୱର

Digitized by PPRACHIN, SOA

# ସୂଚୀପତ୍ର



Digitized by PPRACHIN, SOA

# ମୁଖବନ୍ଧ

ଡିପିଇପି ତରଫରୁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପାଇଁ ଶିକ୍ଷଣ କାର୍ଯ୍ୟ ଭିତ୍ତିକ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି । ପୂର୍ବ ପାଠ୍ୟ ପୁସ୍ତକ ଗୁଡ଼ିକ କେବଳ ଦକ୍ଷତା ଉପରେ ଆଧାରିତ ଥିବା ସ୍ଥଳେ ନୂତନ ପାଠ୍ୟପୁସ୍ତକ ଗୁଡ଼ିକ ଦକ୍ଷତା, କାର୍ଯ୍ୟଭିତ୍ତିକ ତଥା ସ୍ୱଶିକ୍ଷଣ ଉପରେ ଆଧାରିତ । ପ୍ରଥମ ଶ୍ରେଣୀରେ ଭାଷା, ଗଣିତ ଓ ପରିବେଶ ଅଧ୍ୟୟନ ପାଇଁ ପୂର୍ବରୁ ପୃଥକ ପୃଥକ ପାଠ୍ୟପୁସ୍ତକ ପ୍ରଚଳିତ ଥିଲା । କିନ୍ତୁ ଏହି ନୂତନ ପାଠ୍ୟପୁସ୍ତକରେ ଉପରୋକ୍ତ, ତିନୋଟି ବିଷୟକୁ ମିଶାଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି । ଏହି ପାଠ୍ୟପୁସ୍ତକର ପ୍ରତ୍ୟେକ ବିଷୟକୁ ପାଠ କଲାପରେ ଛାତ୍ରଛାତ୍ରୀମାନେ ଭାଷା, ଗଣିତ ଓ ପରିବେଶ ସମ୍ପର୍କୀୟ ଆବଶ୍ୟକ ଦକ୍ଷତା ହାସଲ କରିବାରେ ସମର୍ଥ ହେବେ । ସେହିପରି ଦ୍ୱିତୀୟ ଶ୍ରେଣୀର ଭାଷା ଓ ପରିବେଶ ଅଧ୍ୟୟନକୁ ନେଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଥିବା ବେଳେ ଗଣିତ ପାଇଁ ଏକ ସ୍ୱତନ୍ତ୍ର ପାଠ୍ୟ ପୁସ୍ତକ ପ୍ରସ୍ତୁତ ହୋଇଛି । ତୃତୀୟ ଶ୍ରେଣୀର ଭାଷା ଓ ଗଣିତ ପାଇଁ ପୃଥକ ପୃଥକ ପାଠ୍ୟ ପୁସ୍ତକ ପ୍ରସ୍ତୁତ କରାଯାଇଥିବାବେଳେ ସାମାଜିକ ପାଠ ଏବଂ ସାଧାରଣ ବିଜ୍ଞାନକୁ ନେଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି ।

ପିଲାମାନେ ସାଧାରଣତଃ ଛବି ପ୍ରିୟ । ସେମାନଙ୍କର ମାନସିକ ଅବସ୍ଥାକୁ ବିଚାର କରି ଏଥିରେ ଛବି ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଏହାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଏହାର ପ୍ରଚ୍ଛଦପଟକୁ ବହୁରଙ୍ଗ ବିଶିଷ୍ଟ କରାଯିବା ସଂଗେ ସଂଗେ ଭିତର ପୃଷ୍ଠାଗୁଡ଼ିକୁ ଦ୍ୱିରଙ୍ଗ କରାଯାଇଛି । କେତେକ ପ୍ରସଙ୍ଗକୁ କେବଳ ଚିତ୍ର ମାଧ୍ୟମରେ ଉପସ୍ଥାପନା କରାଯାଇଥିବା ସ୍ଥଳେ ଆଉ କେତେକ ପ୍ରସଙ୍ଗକୁ ଗପ, ଗୀତ ଏବଂ କଥୋପକଥନ ଜରିଆରେ ଉପସ୍ଥାପନ କରାଯାଇଛି ।

ପୂର୍ବ ପାଠ୍ୟପୁସ୍ତକ ସହିତ ଅଭ୍ୟସ୍ତ ଆମର ଶିକ୍ଷକ ଶିକ୍ଷୟିତ୍ରୀମାନେ ନୂତନ ଭାବରେ ପ୍ରସ୍ତୁତ ଏହି ପାଠ୍ୟପୁସ୍ତକକୁ ଶ୍ରେଣୀରେ ଉପସ୍ଥାପନା କରିବାରେ ହୁଏତ କେତେକ ଅସୁବିଧା ଅନୁଭବ କରିପାରନ୍ତି । ସେମାନଙ୍କର ଅସୁବିଧା ଦୂରୀକରଣ ପାଇଁ ଏହି ପୁସ୍ତକଟିର ପରିକଳ୍ପନା ।

ପାଠ୍ୟପୁସ୍ତକରେ କେତେକ ତଥ୍ୟ, ସୂଚନା ଓ ଉଦାହରଣ ଆଦି ରହିବାର ଆବଶ୍ୟକତା ଅନୁଭୂତ ହେଉଥିଲେ ହେଁ ଏହାର କଳେବର ବୃଦ୍ଧି ଆଶଙ୍କାରେ ସେସବୁକୁ ପାଠ୍ୟପୁସ୍ତକରେ ରଖା ନଯାଇ ଏହି ଶିକ୍ଷକ ସହାୟକ ପୁସ୍ତକରେ ସ୍ଥାନିତ କରାଯାଇଛି । ଶିକ୍ଷକ ଶିକ୍ଷୟିତ୍ରୀମାନେ ପାଠ୍ୟ ବିଷୟବସ୍ତୁ ଉପସ୍ଥାପନା ସମୟରେ ଏହାର ଉପଯୋଗ କରି ପାରିବେ ।

କୌଣସି ଏକ ପ୍ରସଙ୍ଗକୁ ପଢ଼ାଇବା ପୂର୍ବରୁ ପ୍ରସଙ୍ଗର ଉଦ୍ଦେଶ୍ୟ, ଏଥିପାଇଁ ଆବଶ୍ୟକ ସମୟ, ପ୍ରସଙ୍ଗର ଉପସ୍ଥାପନା ଶୈଳୀ ଏବଂ ପୂର୍ବ ପ୍ରସ୍ତୁତି ସମ୍ପର୍କରେ ଏଥିରେ ସମ୍ୟକ ସୂଚନା ଦିଆଯାଇଛି ।

ଛାତ୍ରଛାତ୍ରୀମାନେ ଶିକ୍ଷଣ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିବା ନିମିତ୍ତ କେତେକ ସକ୍ରିୟାତ୍ମକ କାର୍ଯ୍ୟ, ଚିତ୍ରକାର୍ଡ଼, ଶବ୍ଦକାର୍ଡ଼, ଫ୍ଲାସ୍‌କାର୍ଡ଼, ଅକ୍ଷରକାର୍ଡ଼, ଶବ୍ଦ ଖେଳ, ମାଥିସ୍ ଓ ଟାନ୍‌ଗ୍ରାମ୍ ଆଦି ବ୍ୟବହାର କରିବାର କୌଶଳ ସଂପର୍କରେ ମଧ୍ୟ ସୂଚନା ଦିଆଯାଇଛି ।

ସବୁ ସମୟରେ ଶ୍ରେଣୀର ସମସ୍ତ ପିଲାଙ୍କୁ ବ୍ୟକ୍ତିଗତ ଭାବରେ ଦୃଷ୍ଟି ଦେବା କଷ୍ଟକର ହୋଇଥାଏ । ତେଣୁ ସମସ୍ତ ଛାତ୍ରଛାତ୍ରୀ କିପରି ଶିକ୍ଷଣ କାର୍ଯ୍ୟରେ ଅଂଶ ଗ୍ରହଣ କରିପାରିବେ ସେଥିପାଇଁ ଶିକ୍ଷକ ଶ୍ରେଣୀରେ ଦଳଗଠନ କରି ସମସ୍ତଙ୍କୁ କାର୍ଯ୍ୟରେ ନିୟୋଜିତ କରିଥାନ୍ତି । ଏହି ପୁସ୍ତକଟିରେ ଅନେକ ଦଳଗତ କାର୍ଯ୍ୟ ଓ ଏହାର ପରିଚାଳନା ସମ୍ପର୍କରେ ଆଲୋଚନା କରାଯାଇଛି ।

ବିଷୟବସ୍ତୁକୁ ସରସ ଓ ସୁନ୍ଦର ଭାବରେ ଉପସ୍ଥାପନା କରିବା ପାଇଁ ପ୍ରତି ବିଷୟ ନିମିତ୍ତ କି କି ଉପକରଣ ଆବଶ୍ୟକ ତାହାର ସୂଚନା ମଧ୍ୟ ଏଥିରେ ଦିଆଯାଇଛି । ଏତଦ୍ ବ୍ୟତୀତ ଆପଣମାନେ ନିଜ ପରିବେଶରୁ ବିନା ମୂଲ୍ୟ ବା ସ୍ୱଳ୍ପମୂଲ୍ୟର ଅନ୍ୟାନ୍ୟ ଆବଶ୍ୟକ ଉପକରଣ ସଂଗ୍ରହ କରି ବ୍ୟବହାର କରିପାରିବେ ।

ବିଷୟ ବସ୍ତୁକୁ ଭିତ୍ତି କରି କେତେକ ପ୍ରକଳ୍ପ କାର୍ଯ୍ୟର ନମୁନା ମଧ୍ୟ ଏଥିରେ ଦିଆଯାଇଛି । ଏହା ଯଥେଷ୍ଟ ବା ସର୍ବୋତ୍କୃଷ୍ଟ ବୋଲି ଭାବିବା ଉଚିତ୍ ନୁହେଁ । ଏଗୁଡ଼ିକ କରାଇବା ସଙ୍ଗେ ସଙ୍ଗେ ନିଜ ପରିବେଶକୁ ଲକ୍ଷ୍ୟକରି ଏହିଭଳି ଆହୁରି ଅନେକ ପ୍ରକଳ୍ପ କାର୍ଯ୍ୟ ମଧ୍ୟ ଆପଣମାନେ କରିପାରିବେ ।

ଛାତ୍ରଛାତ୍ରୀମାନଙ୍କର ଶିକ୍ଷଣ ଉପଲବ୍ଧି ସ୍ତରର ମୂଲ୍ୟାୟନ ପାଇଁ ଗୋଟିଏ ଶିକ୍ଷା ବର୍ଷରେ କେତୋଟି ଏକକ ପରୀକ୍ଷଣ ତଥା ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷା କରାଯିବ ସେ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ଏଠାରେ ସ୍ପଷ୍ଟ କରି ଦିଆଯାଇପାରେ ଯେ ଏହି ସୂଚନା ଗୁଡ଼ିକ ବାଧ୍ୟତାମୂଳକ ନୁହେଁ । ସ୍ଥାନୀୟ ପରିବେଶ ଏବଂ ପରିସ୍ଥିତିକୁ ବିଚାରକୁ ନେଇ ଏଥିରେ ଆବଶ୍ୟକ ପରିବର୍ତ୍ତନ କରିପାରିବେ ।

ଆଶା, ପାଠ୍ୟ ବିଷୟବସ୍ତୁକୁ ଛାତ୍ରଛାତ୍ରୀଙ୍କ ନିକଟରେ ଯଥାର୍ଥ ଭାବରେ ଉପସ୍ଥାପନ କରିବାରେ ଏହି ପୁସ୍ତକଟି ବିଶେଷ ସହାୟକ ହେବ । ଏହାକୁ ବ୍ୟବହାର କରି ଏଥିରେ ଥିବା ଦୋଷ ଦୁର୍ବଳତାକୁ ସୂଚାଇବା ସହ ଏହା କିପରି ଅଧିକ ଉପଯୋଗୀ ହୋଇପାରିବ ସେ ସଂପର୍କରେ ଗଠନ ମୂଳକ ପ୍ରସ୍ତାବ ମାନ ଦେବାପାଇଁ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଅନୁରୋଧ ।

ବିଜୟ ଅରୋରା
ପ୍ରକଳ୍ପ ନିର୍ଦ୍ଦେଶକ

Digitized by PPRACHIN, SOA

## ଘରେ ବାହାରେ

ସମୟ - ୧୨ ପିରିୟଡ୍















ଚିତ୍ରରେ କ'ଣ ସବୁ ଦେଖୁଛ ?

ପ୍ରତି ଯୋଡ଼ା ଚିତ୍ରରେ କେଉଁ କେଉଁ ଚିତ୍ର ତୁମର ପସନ୍ଦ ଓ କାହିଁକି ? ଶୃଙ୍ଖଳିତ ଭାବରେ କାମ ହେଉଥିବା ଚିତ୍ରଗୁଡ଼ିକୁ ଚିହ୍ନାଅ ।



Digitized by PPRACHIN, SOA

ଘରେ, ବାହାରେ, ଖେଳ ପଡ଼ିଆରେ, ବିଭିନ୍ନ ଅନୁଷ୍ଠାନରେ ଓ ସର୍ବସାଧାରଣ ସ୍ଥାନରେ ଆମେ କେତେ ପ୍ରକାରର କାମ କରୁ । ସୁବିଧାରେ କାର୍ଯ୍ୟ ହାସଲ ପାଇଁ ଆମେ କିଛି ସାଧାରଣ ଶୃଙ୍ଖଳା ମାନି କାମ କରୁ । ବଡ଼ମାନେ ବେଳେବେଳେ ଆମକୁ ଉପଦେଶ ଛଳରେ ଆମର ଭଲ ପାଇଁ ଅନେକ କଥା କହିଥାନ୍ତି । ଏହି ଉପଦେଶ ମାନି ଚଳିଲେ ଆମ କାମ ସହଜ ଓ ସୁବିଧାରେ ହୁଏ ଏବଂ ଜୀବନ ନିରାପଦ ରହେ ।

ତଳ କଥାଗୁଡ଼ିକରୁ ତୁମେ ଯେଉଁ କଥାଗୁଡ଼ିକ ଭଲ ବୋଲି ଭାବୁଛ, ସେଗୁଡ଼ିକୁ ପାଖ ବାକ୍ସରେ ଲେଖ ।

- ପିତାମାତାଙ୍କ କଥା ମାନି ଚଳିବା
- ଭାଇ ଭଉଣୀଙ୍କୁ ସ୍ନେହ କରିବା
- ବହିପତ୍ର ଏଣେତେଣେ ଫୋପାଡ଼ିବା
- ଘରକୁ ଆସୁଥିବା ଅତିଥିଙ୍କୁ ପ୍ରଣାମ କରିବା
- ଠିକ୍ ସମୟରେ ସ୍କୁଲକୁ ଯିବା
- ଘରେ ହୋ ହୋ ହେବା
- ଧାରୁଆ, ମୁନିଆ ଜିନିଷକୁ ସାବଧାନରେ ବ୍ୟବହାର କରିବା
- ପଡ଼ୋଶୀ ଓ ପରିବାରର ଅନ୍ୟମାନଙ୍କୁ କାମରେ ସାହାଯ୍ୟ କରିବା

ଉପରେ ଲେଖିଥିବା ଭଲ କାମଗୁଡ଼ିକ ପରି ପରିବାରରେ ଆଉ ସବୁ କି କାମ କଲେ ଭଲ ହେବ ତାହା ତୁମ ବାପା, ମାଆ, ଭାଇ, ଭଉଣୀଙ୍କ ଠାରୁ ବୁଝି ଲେଖ ।

ଛୁଟିଦିନ ବ୍ୟତୀତ ଅନ୍ୟ ସବୁ ଦିନ ତୁମେ ବିଦ୍ୟାଳୟକୁ ଆସୁଛ । ପରିବାର ଭଳି ଏଠି ମଧ୍ୟ ତୁମକୁ କିଛି ନିୟମ ମାନିବାକୁ ପଡ଼େ । ବିଦ୍ୟାଳୟର ନିୟମଗୁଡ଼ିକର ଗୋଟିଏ ତାଲିକା କର ।

ସେହିଭଳି ରାସ୍ତାରେ ଯିବା ଆସିବା ପାଇଁ ଆମେ କିଛି ନିର୍ଦ୍ଦିଷ୍ଟ ନିୟମ ପାଳନ କରୁଛୁ । କେତେକ ସୂଚନାକୁ ସଙ୍କେତ ଆକାରରେ ରାସ୍ତାକଡ଼ରେ ତୁମେ ଦେଖିବାକୁ ପାଇବ । ସେଥିରୁ କିଛି ଆଗ ପଛ କରି ନିମ୍ନରେ ଦିଆଯାଇଛି । ସଙ୍କେତ ଅନୁସାରେ ଠିକ୍ ସୂଚନାକୁ ଚିହ୍ନାଇ ପାରିବ କି ?

ଗାଆଁର ନାଁ

ଦୂରତା ପଥର

ଆଗରେ ସ୍କୁଲ ଅଛି,
ଗାଡ଼ି ଧୀରେ ଚଳାଅ ।

ଆଗରେ ରାସ୍ତାଟି ବାମ ପଟକୁ ବୁଲିଛି ।

ଆଗରେ ରାସ୍ତା ଅଣଓସାରିଆ ।

ଆଗରେ ରାସ୍ତା ମରାମତି ଚାଲିଛି, ରାସ୍ତା ବନ୍ଦ ।






Digitized by PPRACHIN, SOA

ଯାନବାହନ ସବୁ ରାସ୍ତାରେ ନିଜ ବାମ ପଟେ ଯାଆନ୍ତି । କିନ୍ତୁ ମଣିଷମାନେ ରାସ୍ତାର ଡାହାଣ ପାର୍ଶ୍ୱରେ ଚାଲିବା ନିରାପଦ ଅଟେ । ଏହିଭଳି ନିୟମ ମାନି ଯିବା ପାଇଁ ରାସ୍ତା କଡ଼ରେ କେତେକ ସଂକେତ ଦିଆଯାଇଥାଏ । ଆସ, ସେଥି ମଧ୍ୟରୁ କେତୋଟି ସଂକେତ ବିଷୟରେ ଜାଣିବା ।

- ରାସ୍ତାଟି ଅଳ୍ପ ବାଟ ପରେ ହଠାତ୍ ବାମକୁ ବା ଡାହାଣକୁ ବୁଲି ଯାଇଛି । ବାଙ୍କ ସେପଟେ ହଠାତ୍ ଗାଡ଼ି ଆସିପାରେ, ହୁସିଆର ।



- ଆଗରେ ହମ୍ପସ ଅଛି । ଗାଡ଼ି ଧୀରେ ଚଳାଅ । →



- ଆଗରେ ଅଣଓସାରିଆ ରାସ୍ତା ଅଛି । ଧୀରେ ଗାଡ଼ି ଚଳାଅ । →



- ଆଗରେ ଅଣଓସାରିଆ ପୋଲ ଅଛି । ଅନ୍ୟ ଗାଡ଼ି ଆସୁଥିଲେ ଅପେକ୍ଷା କର । →



- ଆଗରେ ଜଗୁଆଳି ନାହିଁ କି ଫାଟକ ନାହିଁ । ଗାଡ଼ିକୁ ଦେଖି ଲାଇନ୍ ପାରି ହୁଅ । →



- ଆଗରେ ଫାଟକ ଥିବା ଲେବୁଲ୍ କ୍ରସିଂ । ଫାଟକ ବନ୍ଦ ଥିଲେ ଅପେକ୍ଷା କର । →



- ଆଗରେ ବିଦ୍ୟାଳୟ ଅଛି । ରାସ୍ତା ଉପରେ ପିଲାମାନେ ଥାଇ ପାରନ୍ତି । ଧୀରେ ଗାଡ଼ି ଚଳାଅ । →



ରାସ୍ତାରେ ଯିବାବେଳେ ଏହି ନିୟମ ନ ମାନିଲେ କ'ଣ ଅସୁବିଧା ହେବ, ଲେଖ ।

______________________________

ଗାଡ଼ି ଚଳାଚଳ ପାଇଁ କେଉଁ ଚିତ୍ରଟିକୁ ଅଧିକ ନିରାପଦ ମନେ କରୁଛ ଚିହ୍ନାଅ ।

______________________________

______________________________

ସହରାଞ୍ଚଳ ରାସ୍ତାର ଛକ ଜାଗାରେ ଟ୍ରାଫିକ୍ ପୋଲିସ୍ ଯାନବାହନ ନିୟନ୍ତ୍ରଣ କରିଥାଆନ୍ତି । ଧଳା ପ୍ୟାଣ୍ଟ ଓ ଧଳା ସାର୍ଟ ପିନ୍ଧି ଥାଆନ୍ତି । ହାତରେ ସଙ୍କେତ ଦ୍ୱାରା ସେ ଗୋଟିଏ ଦିଗ ପରେ ଅନ୍ୟ ଦିଗକୁ ଗାଡ଼ି ଚାଳକମାନଙ୍କୁ ବାଟ ଛାଡ଼ି ଥାଆନ୍ତି ।

ଆଜିକାଲି ବଡ଼ ସହରରେ ଟ୍ରାଫିକ୍ ପୋଲିସ୍ ବଦଳରେ ବିଜୁଳି ଆଲୋକ ସଂକେତ ଦ୍ୱାରା ରାସ୍ତା ନିୟନ୍ତ୍ରଣ କରାଯାଇଥାଏ । ଛକ ଜାଗାରେ ବିଜୁଳି ଖୁଣ୍ଟରେ ନାଲି, କମଳା ଓ ସବୁଜ ରଙ୍ଗର ବତି ଜଳେ ଓ ଲିଭେ । ବତିର ବିଭିନ୍ନ ରଙ୍ଗ ଭିନ୍ନ ଭିନ୍ନ ସଙ୍କେତ ଓ ସୂଚନା ଦିଏ ।

ନାଲି ବତି ଜଳିଲେ - ଗାଡ଼ି ରହିବ ।
କମଳା ରଙ୍ଗ ବତି ଜଳିଲେ - ଯିବା ପାଇଁ ପ୍ରସ୍ତୁତ ହୁଅ ।
ସବୁଜ ରଙ୍ଗ ବତି ଜଳିଲେ - ନିରାପଦରେ ଯାଇପାର ।





Digitized by PPRACHIN, SOA

ବିଦ୍ୟାଳୟ ଆରମ୍ଭରୁ ଛୁଟି ହେବାଯାଏ ଯେଉଁ ସବୁ କାମ ହୁଏ, ସେଗୁଡ଼ିକୁ କ୍ରମାନୁସାରେ ଲେଖ ।

| | |
|---|---|
| • ______________ | • ______________ |
| • ______________ | • ______________ |

ଆମେ କିଛି ଖେଳ ଘର ଭିତରେ ଖେଳୁ ଓ ଆଉ କିଛି ଘର ବାହାରେ ପଡ଼ିଆରେ ଖେଳୁ । କିନ୍ତୁ ପ୍ରତି ଖେଳ ପାଇଁ କିଛି ନିୟମ ରହିଛି ଓ ଆମେ ତାହା ପାଳନ କରୁଛୁ । ତୁମେ ଖେଳୁଥିବା ଗୋଟିଏ ଖେଳ ଓ ତା'ର ନିୟମଗୁଡ଼ିକୁ ଲେଖ ।

• ______________________________

• ______________________________

## ଅଭ୍ୟାସ

■ ଧାଡ଼ିରେ ରହିବା ନିୟମଟି କେଉଁ କେଉଁ ଠାରେ ଉପଯୋଗୀ, ଠିକ୍ (✓) ଚିହ୍ନ ଦିଅ ।

୧. ପ୍ରାର୍ଥନା ସଭାରେ
୨. ରେଳ ଷ୍ଟେସନରେ ଟିକଟ କାଟିବା ସମୟରେ
୩. ଖେଳ ପଡ଼ିଆରେ ଖେଳିବାବେଳେ
୪. ଟ୍ରେନ୍/ବସ୍‌ରେ ଚଢ଼ିବା ବେଳେ
୫. ବ୍ୟାଙ୍କରେ
୬. ଏକୁଟିଆ ରାସ୍ତାରେ ଚାଲିବା ବେଳେ
୭. ଡାକ୍ତରଖାନାରେ ଚିକିତ୍ସା ବେଳେ
୮. ଶ୍ରେଣୀରେ ଆଗ ପଛ ବସିବା ବେଳେ
୯. ବଗିଚାରେ ଘାସ ବାଛିବା ବେଳେ
୧୦. ପୂଜା ଉତ୍ସବ ଗହଳିରେ ଠାକୁର ଦର୍ଶନ ବେଳେ

■ ଧାଡ଼ିରେ ଠିଆ ହେବା ନିୟମ ମାନିଲେ କି କି ସୁବିଧା ହୁଏ, ଲେଖ ।

୧. ______________________________
୨. ______________________________
୩. ______________________________
୪. ______________________________

■ ତୁମେ କେଉଁ କେଉଁ ବେଲୁନ୍ ପସନ୍ଦ କର, ଚିହ୍ନଟ କର ।






Digitized by PPRACHIN, SOA

କ'ଣ ଶିଖିବେ

- ଘରେ ବାହାରେ, ବିଦ୍ୟାଳୟରେ ଓ ସର୍ବସାଧାରଣ ସ୍ଥାନରେ ଶୃଙ୍ଖଳିତ ବ୍ୟବହାର କରିବାକୁ ପସନ୍ଦ କରିବେ ।
- ଧାଡ଼ିରେ ଛିଡ଼ା ହୋଇ ନିଜ ପାଳି ଆସିବାଯାଏ ଅପେକ୍ଷା କରିବେ । ରାସ୍ତାର ମୁଖ୍ୟ ସଂକେତଗୁଡ଼ିକୁ ବୁଝିବେ ।
- ରାସ୍ତାର ମୁଖ୍ୟ ନିୟମଗୁଡ଼ିକୁ ପାଳନ କରିବେ ।

ସୂଚନା

ଏହି ପାଠରେ ନଅଟି ଶିକ୍ଷଣ କାର୍ଯ୍ୟ ଅଛି । ଏଥିରେ ଅଂଶଗ୍ରହଣ କରି ପିଲାମାନେ ନିମ୍ନକଥା ସବୁ ଜାଣିବେ ।

- ଘରେ ବାହାରେ, ଖେଳପଡ଼ିଆରେ ଏବଂ ସର୍ବସାଧାରଣ ସ୍ଥାନରେ ଶୃଙ୍ଖଳିତ ବ୍ୟବହାର ଆମ କାମକୁ ସହଜସାଧ ଓ ନିରାପଦ କରିଥାଏ । ରାସ୍ତାର ସଂକେତରୁ ନିୟମଗୁଡ଼ିକୁ ଜାଣି କାର୍ଯ୍ୟ କଲେ ଦୁର୍ଘଟଣାରୁ ରକ୍ଷାମିଳେ ।
- ଆବଶ୍ୟକ ସ୍ଥଳେ ଶିକ୍ଷଣ କାର୍ଯ୍ୟର ସୂଚନାକୁ ସ୍ପଷ୍ଟ କରନ୍ତୁ । ଯଥା- ପିଲାଙ୍କ ପସନ୍ଦଗୁଡ଼ିକୁ ତାଲିକା କରିବା ସମୟରେ ।
- ବିଦ୍ୟାଳୟର ନିୟମ (ଶ୍ରେଣୀ କକ୍ଷରୁ ବାହାରିବା ବେଳେ, ପ୍ରାର୍ଥନା ସଭାକୁ ଗଲାବେଳେ, ପ୍ରାର୍ଥନାସଭାରୁ ଫେରି ଶ୍ରେଣୀ କକ୍ଷକୁ ଆସିବା ବେଳେ), ଖେଳର ନିୟମ, ବିଦ୍ୟାଳୟରେ ହେଉଥିବା କାମକୁ କ୍ରମରେ ସଜାଇବା ଭଳି ଶିକ୍ଷଣ କାର୍ଯ୍ୟରେ ପିଲାମାନଙ୍କୁ ପରସ୍ପର ଆଲୋଚନା କରିବାକୁ ସୁଯୋଗ ଦିଅନ୍ତୁ ।
- ଟ୍ରାଫିକ୍ ବ୍ୟବସ୍ଥା ବିଷୟରେ ବିଷଦ ଆଲୋଚନା କରନ୍ତୁ ।

ଆମେ ଜାଣିବା

ଯାନବାହନଗୁଡ଼ିକ ରାସ୍ତାରେ ଯିବାବେଳେ ନିଜର ବାମ ପଟେ ଯିବା ଆସିବା କରିବେ ଓ ପଦଚାରୀ ମାନେ ରାସ୍ତାରେ ଯିବାବେଳେ ନିଜର ଡାହାଣ ପାର୍ଶ୍ୱରେ ଚାଲିବେ । ଏହା ଟ୍ରାଫିକ୍ ନିୟମ ଅଟେ । ରାସ୍ତାରେ ଡାହାଣ ପାର୍ଶ୍ୱରେ ଚାଲିବାବେଳେ ପଛ ପଟରୁ ଯାନବାହନ ଜନିତ ଦୁର୍ଘଟଣାର ଆଶଙ୍କା ନଥାଏ । ସାମନା ପଟୁ ଆସୁଥିବା ଯାନବାହନକୁ ଦେଖି ଦୁର୍ଘଟଣାକୁ ଏଡ଼େଇବାର ସୁଯୋଗ ଥାଏ । ଏଣୁ ରାସ୍ତାରେ ଡାହାଣ ପାର୍ଶ୍ୱରେ ଚାଲିବା ଅଧିକ ନିରାପଦ ।

ଅଭିନୟ

ଟ୍ରାଫିକ୍ ଓ ଟ୍ରାଫିକ୍ ପୋଲିସର ଅଭିନୟ

ସରକାରୀ କଣ୍ଟ୍ରୋଲ ଦୋକାନରୁ ଧାଡ଼ି ବାନ୍ଧି ଜିନିଷ କିଣିବା ଖେଳ ଖେଳିବେ । ପିଲାମାନେ ସେମାନେ ଜାଣିଥିବା ଖେଳ ଯଥା:- (କବାଡ଼ି ବା ବୋହୂଚୋରି ଖେଳ) ର ନିୟମକୁ ନିଜକୁ ସୁହାଇବା ଭଳି ବଦଳାଇ ଖେଳିବେ । ଖେଳ ସାରିବା ପରେ ପରିବର୍ତ୍ତିତ ନିୟମ ଯୋଗୁଁ କ'ଣ କ'ଣ ସୁବିଧା ଓ ଅସୁବିଧା ହେଲା, ଦଳଗତ ଆଲୋଚନା କରିବେ ।

ଟାନ୍‌ଗ୍ରାମ୍

ଟାନ୍‌ଗ୍ରାମ୍‌ର ଅଧିକ ତଥ୍ୟ ଉପକରଣରେ ଦିଆଯାଇଛି । ଟାନ୍‌ଗ୍ରାମ୍‌ରେ ୭ଟି ଖଣ୍ଡକାର୍ଡ଼କୁ ନେଇ ଟ୍ରାଫିକ୍‌ର ବିଭିନ୍ନ ସଙ୍କେତ ତିଆରି କରିବେ ।



Digitized by PPRACHIN, SOA

**ପ୍ରସ୍ତୁତି**

**ନମସ୍କାର ନମସ୍କାର**

ଶିକ୍ଷକ ଓ ପିଲାମାନେ ଗୋଲାକାରରେ ବସିବେ । 'ନମସ୍କାର-ନମସ୍କାର, ବାପା-ନମସ୍କାର' ଗୀତଟି ଜଣେ ଗାଇବେ । ଏହିଭଳି ବାପା ବଦଳରେ ମାଆ, ଜେଜେ, ମାଇଁ, ମାଉସୀ ପ୍ରଭୃତି ଜଣ ଜଣ କରି ନିଜ ପାଳି ଅନୁସାରେ ଗାଇବେ ।

**ମାମୁଁ-ଭଣଜା ବଲ୍ ଖେଳ**

ଶିକ୍ଷକ ଓ ପିଲାମାନେ ଗୋଲାକାରରେ ବସିବେ । ଜଣେ ପିଲା ବଲ୍‌ଟିଏ ନେଇ ଅନ୍ୟ ଜଣେ ପିଲାପାଖକୁ ଗଡ଼େଇ ଦେଇ ''ମୁଁ-ମାମୁଁ'' ବୋଲି କହିବ । ବଲ୍ ପାଇଥିବା ପିଲା 'ମୁଁ- ଭଣଜା' ବୋଲି କହି 'ମାମୁଁ-ନମସ୍କାର କହିବ' । ଏହି କ୍ରମରେ ବିଭିନ୍ନ ସଂପର୍କକୁ (ଯଥା- ପୁଅ-ମା, ବାପା-ଝିଅ, ନାତି-ଜେଜେ, ମଉସା-ଝିଆରୀ) ପ୍ରଭୃତି ନେଇ ଖେଳିବେ । ଶିକ୍ଷଣ କାର୍ଯ୍ୟରେ ନମସ୍କାର, ଆୟୁଷ୍ମାନ ଭବ, ବୁଢ଼ୀଟିଏ ହୋଇଥା, ଭଳି କହିବା ସଙ୍ଗେ ସଙ୍ଗେ ଉପଯୁକ୍ତ ବ୍ୟବହାରକୁ ଅଭିନୟ କରାଯାଇପାରେ ।

**ପିଲାଙ୍କ କାମ**

☞ ଶିକ୍ଷଣକାର୍ଯ୍ୟ ପରିପ୍ରେକ୍ଷୀରେ ନିଜର ପସନ୍ଦ,ଖେଳର ନିୟମ, କ୍ରମ ସଜ୍ଜା ପ୍ରଭୃତି କାମ କରିବା ବେଳେ ପିଲାମାନେ ନିଜେ ନିଜେ ଚିନ୍ତାକରି କାର୍ଯ୍ୟର ଯୋଜନା ପରିଚାଳନା କରିବା ପାଇଁ ଉତ୍ସାହିତ ହେବେ ।

☞ ପିଲାମାନେ ସାଙ୍ଗସାଥୀଙ୍କ ସହ ଆଲୋଚନା କରି ଓ ଖେଳୁଥିବା ଖେଳ ସେଗୁଡ଼ିକ ନିୟମର ତାଲିକା ପ୍ରସ୍ତୁତ କରିବେ ।

☞ ଜଣାଶୁଣା ଟ୍ରାଫିକ୍ ସଂକେତ ଗୁଡ଼ିକର ଚିତ୍ର ଆଙ୍କିବେ । ବହିରେ ଦିଆଯାଇଥିବା ଟ୍ରାଫିକ୍ ସଂକେତ ସହ ସ୍ଥାନରେ ଥିବା ଟ୍ରାଫିକ୍ ସଂକେତ ଗୁଡ଼ିକୁ ପିଲାମାନେ ଚିହ୍ନିବାର ସୁଯୋଗ ପାଇବେ ଓ ସଂକେତଗୁଡ଼ିକୁ (ଯେ କୌଣସି ୫ଟି) ନିଜେ ଅଙ୍କନ କରିବେ ।

**ଉପକରଣ**

ବର୍ଗାକାର ମାପର ଡ୍ରଇଂସିଟ୍ ।

**ଅନ୍ୟକାର୍ଯ୍ୟ**

କେଉଁ କାମ ବେଳେ ଧାଡ଼ିର ଆବଶ୍ୟକତା ନାହିଁ, ଦଳଗତ ଆଲୋଚନା କରିବେ ।

**ପ୍ରକଳ୍ପ**

☞ ପିଲାମାନେ ଟ୍ରାଫିକ୍ ଛକକୁ ଯାଇ ବିଭିନ୍ନ କାର୍ଯ୍ୟ ପ୍ରତ୍ୟକ୍ଷ ଭାବରେ ପର୍ଯ୍ୟବେକ୍ଷଣ କରିବେ । ଶ୍ରେଣୀ କକ୍ଷରେ ଆଲୋଚନା କରି ଲେଖିବେ ।

☞ ଟାନ୍‌ଗ୍ରାମ୍ ବ୍ୟବହାର

**ଉପକରଣ**

ଟ୍ରାଫିକ୍ ସଂକେତର ଚିତ୍ର ପ୍ରସ୍ତୁତି

ଟାନ୍‌ଗ୍ରାମ୍‌ର ୭ଟି କାର୍ଡ଼

ଏହା ହଜାର ବର୍ଷ ତଳର ଚୀନ୍ ଦେଶର ଏକ ଜଣାଶୁଣା ଖେଳ ଅଟେ । ଯେ କୌଣସି ଗୋଟିଏ ବର୍ଗକ୍ଷେତ୍ରକୁ ଚିତ୍ରରେ ଦେଖା ଯାଇଥିବା ସାତୋଟି ଖଣ୍ଡରେ କାଟ ।

ଏହି ସାତ ଖଣ୍ଡକୁ ଯୋଡ଼ି ଯୋଡ଼ି ବିଭିନ୍ନ ଜନ୍ତୁ, ମଣିଷ ଇତ୍ୟାଦିର ଆକୃତି କରିବାକୁ ଚେଷ୍ଟା କର ।

ପ୍ରତି ଆକୃତିରେ ସାତୋଟି ଯାକ ଖଣ୍ଡ ବ୍ୟବହାର ହେବା ଦରକାର ।

ଏହିପରି ନୂଆ ନୂଆ ମଜାଦାର ଆକୃତି କରିବାକୁ ଯାଇ ଏଠାରେ ଟ୍ରାଫିକ୍ ସଂକେତଗୁଡ଼ିକୁ କର ।



Digitized by PPRACHIN, SOA

# କେଉଁଠି କ'ଣ ହୁଏ

ସମୟ - ୮ ପିରିୟଡ୍









ମୀନାର ବାପାଙ୍କ ଦେହ ବହୁତ ଖରାପ ହୋଇଗଲା । ସେ ଭଲଭାବରେ ନିଃଶ୍ୱାସ ପ୍ରଶ୍ୱାସ ନେଇପାରୁ ନଥିଲେ । ଛାତିରେ ଭାରି କଷ୍ଟ ହେଉଥିଲା । ଭାଇ ଓ ସେ ବାପାଙ୍କୁ ଡାକ୍ତରଖାନା ନେଇଗଲେ । ସଙ୍ଗେ ସଙ୍ଗେ ଡାକ୍ତର ଆସି ପରୀକ୍ଷା କରି ଔଷଧ ଦେଲେ ଓ ଡାକ୍ତରଖାନାରେ କିଛିଦିନ ରହିବାକୁ କହିଲେ । ନର୍ସ ଆସି ବାପାଙ୍କୁ ଇଞ୍ଜେକ୍ସନ୍ ଦେଲେ ଓ ନାକରେ ନଳ ଦେଇ ନିଃଶ୍ୱାସ ନେବା ପାଇଁ ଯନ୍ତ୍ର ଖଞ୍ଜିଦେଲେ । ନିୟମିତ ଭାବେ ଡାକ୍ତର, ନର୍ସ ଓ ଅନ୍ୟମାନଙ୍କ ସେବାରେ ତିନିଦିନ ପରେ ବାପା ଭଲ ହୋଇ ଘରକୁ ଫେରିଲେ । ମୀନାକୁ ପଚାରିଲେ, "କହିଲୁ ଦେଖି, ଡାକ୍ତରଖାନାରେ କେଉଁମାନଙ୍କୁ ଦେଖିଲୁ ?"

## ଅଭ୍ୟାସ

୧. କେଉଁ କାମରେ ଲାଗେ ?

 → ______

 → ______

 → ______

 → ______

୨. କାହାର କାମ ?

| | | | |
|---|---|---|---|
| ଔଷଧ ବାଣ୍ଟିବା | | ରୋଗୀର ସେବା | |
| ରୋଗୀ ପରୀକ୍ଷା | | ଡାକ୍ତରଖାନା ସଫା ରଖିବା | |

୩. କାହା ପରେ କିଏ ସଜାଡ଼ ।

(କ) ରୋଗ ଚିକିତ୍ସା, ରୋଗୀ ପରୀକ୍ଷା– ______

(ଖ) ଔଷଧ ଖାଇବା, ବୋତଲ ଖୋଲିବା– ______

(ଗ) ଡାକ୍ତରଖାନା ଯିବା, ରୋଗ ହେବା– ______

(ଘ) ଆରୋଗ୍ୟ ହେବା, ଔଷଧ ଖାଇବା– ______

୪. ଡାକ୍ତରଖାନାରେ କେଉଁମାନେ କାର୍ଯ୍ୟ କରନ୍ତି ?



Digitized by PPRACHIN, SOA

**କ'ଣ ଶିଖିବେ** ଡାକ୍ତରଖାନାର କାର୍ଯ୍ୟ ସଂପର୍କରେ ଜାଣିବେ ।

**ସୂଚନା**

ପାଠ ବହିରେ ଡାକ୍ତରଖାନାର ଏକ ପ୍ରାସଙ୍ଗିକ ଉପସ୍ଥାପନ କରାଯାଇଛି ଓ ଡାକ୍ତରଖାନାର ନିତିଦିନିଆ କାର୍ଯ୍ୟକ୍ରମର ଏକ ଚିତ୍ର ଦିଆଯାଇଛି । ଅଧିକ ଆକର୍ଷଣୀୟ କରିବା ପାଇଁ ପିଲାଙ୍କ ନିଜ ଅନୁଭୂତିରୁ ରୋଗ ଓ ଚିକିତ୍ସା ସଂପର୍କିତ ଆଞ୍ଚଳିକ ଘଟଣା ବା ପ୍ରସଙ୍ଗ ଉପସ୍ଥାପନ କରାଯାଇପାରେ ।

**ପ୍ରସ୍ତୁତି**

'ବେଶି ଖାଇଛି', ' ନିୟମିତ ବ୍ୟାୟାମ କରେ', ' ଠାକୁର ପୂଜା କରେ', 'ବର୍ଷାରେ ଭିଜିଛି', 'ମଇଳା ପାଣି ପିଇଛି' ପ୍ରଭୃତି ଲେଖାଥିବା କେତେଗୁଡ଼ିଏ ଚିରିକୁଟ (ପିଲାଙ୍କ ସଂଖ୍ୟା ଅନୁଯାୟୀ) ପ୍ରସ୍ତୁତ କରି ପିଲାଙ୍କ ଆଗରେ ରଖନ୍ତୁ । ପ୍ରତି ପିଲା ଗୋଟିଏ ଲେଖାଏଁ ଚିରିକୁଟି ଉଠାଇ ପଢ଼ିବେ । ଶିକ୍ଷକ କହିବେ, ଯାହାର ଦେହ ଅସୁସ୍ଥ ହେବ ସେ ବସିଯାଉ । ବସିଥିବା ପିଲା ଜଣ ଜଣ କରି କହିବେ- ସେମାନେ କି ପ୍ରକାର ଅସୁସ୍ଥ ରହିବେ ।

- ପାଠରେ ଦିଆଯାଇଥିବା ଚିତ୍ର ଦେଖି ପ୍ରତ୍ୟେକ ପିଲା ଧାଡ଼ିଏ ଲେଖାଏଁ କହିବେ ।
- ପିଲାମାନେ ଓ ଶିକ୍ଷକ ଗୋଲାକାରରେ ବସନ୍ତୁ । ନିଜର ବା ପରିବାରର ଅନ୍ୟ ସଦସ୍ୟଙ୍କ ଅସୁସ୍ଥତା ସଂପର୍କିତ ଅନୁଭୂତି ପିଲାମାନେ ଜଣ ଜଣ କରି କହନ୍ତୁ । ଶିକ୍ଷକଙ୍କ ଠାରୁ ଆରମ୍ଭ କରାଯାଇପାରେ ।
- ଶିକ୍ଷକ ନିକଟସ୍ଥ ଡାକ୍ତରଖାନାରୁ ବା ସ୍ୱାସ୍ଥ୍ୟକର୍ମୀଙ୍କ ନିକଟରୁ ନିମ୍ନ ପ୍ରକାର ପୋଷ୍ଟର ଆଣନ୍ତୁ । ଏହି ବିଷୟଟିର ଶିକ୍ଷଣ ବେଳେ ସେଗୁଡ଼ିକୁ ପ୍ରଦର୍ଶନ କରି ଆଲୋଚନା କରନ୍ତୁ ।

**ଆମେ ଜାଣିବା**

କେତେକ ଅଞ୍ଚଳରେ ସରକାରଙ୍କ ତରଫରୁ ଆୟୁର୍ବେଦିକ ଓ ହୋମିଓପ୍ୟାଥିକ୍ ଡାକ୍ତରଖାନା ଖୋଲାଯାଇଛି । ସହରାଞ୍ଚଳରେ ଅନେକ ବେସରକାରୀ ଡାକ୍ତରଖାନା ବି ଖୋଲା ଯାଇଛି । ଆଜିକାଲି ଚିକିତ୍ସା ପ୍ରଣାଳୀ ଉନ୍ନତସ୍ତରକୁ ପହଞ୍ଚିଲାଣି । ରୋଗ ଚିହ୍ନଟ ପରେ ଆଶୁ ଚିକିତ୍ସାର ଆଜିକାଲି ଆଉ ସମସ୍ୟା ନାହିଁ । କିନ୍ତୁ AIDS ଭଳି ରୋଗ ପାଇଁ ପ୍ରତିଷେଧକ ବ୍ୟବସ୍ଥା ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । କୌଣସି ରୋଗର ପ୍ରତିକାର ଅପେକ୍ଷା ପ୍ରତିଷେଧକ ଶ୍ରେୟସ୍କର ।

**ଅଭିନୟ**

ଦୁଇ ଦଳ ହୋଇ ପିଲାମାନେ ଜଣାଶୁଣା ରୋଗ ଓ ତା'ର ଲକ୍ଷଣ, ପ୍ରତିକାର, ପ୍ରତିଷେଧକ ପ୍ରଭୃତି ବିଷୟ ନେଇ ଖେଳିବେ ।

- ପିଲାମାନେ ନିଜକୁ ଜଣେ ସ୍ୱାସ୍ଥ୍ୟ କର୍ମଚାରୀ ଡାକ୍ତର/ ନର୍ସ/ କମ୍ପାଉଣ୍ଡର/ ଡ୍ରେସର ପ୍ରଭୃତି ରୂପେ ଭାବି ନେଇ ନିଜର କାର୍ଯ୍ୟ ଓ ଅନୁଭୂତି ବିଷୟରେ ବର୍ଣ୍ଣନା କରିବେ ।
- ପଟି ବନ୍ଧେଇବା ପ୍ରଭୃତିର ଅଭିନୟ କରିବେ ।
- ପ୍ରାଥମିକ ଚିକିତ୍ସାର ଧାରଣା ଦେବେ ।
- ରୋଗ ଓ ଚିକିତ୍ସା ସଂପର୍କିତ ଘଟଣା ବାପା, ମା, ଜେଜେଙ୍କ ଠାରୁ ପଚାରି ବୁଝିବେ ।
- ଡାକ୍ତରଖାନାରେ କେଉଁମାନେ ରହନ୍ତି, କେଉଁ କେଉଁ ଉପକରଣ ବ୍ୟବହାର କରନ୍ତି, ତା'ର ତାଲିକା କରିବେ ।



Digitized by PPRACHIN, SOA

- ☞ ପୋଲିଓ ଟୀକା
- ☞ ତରଳ ଝାଡ଼ାର ସରଳ ଚିକିତ୍ସା
- ☞ ଗୋଟିଏ ପରିବାର, ଗୋଟିଏ ସନ୍ତାନ ଇତ୍ୟାଦି

କାମ

- ☞ ପିଲାଙ୍କ ଦ୍ୱାରା ପ୍ରସଙ୍ଗଟିର ଅଭିନୟ ହେବା ବେଳେ ପ୍ରସଙ୍ଗୋପଯୋଗୀ କିଛି ଶବ୍ଦ/ ବାର୍ତ୍ତାଳାପ ଯୋଡ଼ିବା ପାଇଁ ଉତ୍ସାହିତ କରିବେ ।
- ☞ ଗ୍ରାମାଞ୍ଚଳର ସ୍ୱାସ୍ଥ୍ୟକର୍ମୀଙ୍କୁ ଶ୍ରେଣୀକୁ ଡକାଇବେ । ସ୍ୱାସ୍ଥ୍ୟକର୍ମୀଙ୍କ କାର୍ଯ୍ୟ ଓ ପିଲାଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ପିଲାମାନଙ୍କୁ କିଛି କହିବେ ।
- ☞ ଡାକ୍ତରଖାନା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ଗ୍ରାମାଞ୍ଚଳ ସ୍ୱାସ୍ଥ୍ୟକର୍ମୀ ପ୍ରଭୃତିଙ୍କ ଭୂମିକା ଓ କାର୍ଯ୍ୟକୁ ବୁଝାଇବେ ।

ପ୍ରକଳ୍ପ

ନିକଟସ୍ଥ ଡାକ୍ତରଖାନା/ ପ୍ରାଥମିକ ଚିକିତ୍ସା କେନ୍ଦ୍ରକୁ ପିଲାମାନେ ବୁଲି ଆସିବେ । ଯାହା ସବୁ ଦେଖିବେ, ତା'ର ଏକ ବିବରଣୀ ପ୍ରସ୍ତୁତ କରିବେ ।

ଉପକରଣ- ପୋଲିଓ ଟୀକାର ପୋଷ୍ଟର, ତରଳ ଝାଡ଼ାର ସରଳ ଚିକିତ୍ସା, ତୁଳା, ଥର୍ମୋମିଟର, ବଟିକା, ଇଂଜେକ୍ସନ ସିରିଞ୍ଜ, ତରଳ ଔଷଧ, ଟନିକ୍, ବ୍ୟାଣ୍ଡେଜ୍ କନା ପ୍ରଭୃତି ବା ସେଗୁଡ଼ିକର ମଡ଼େଲ୍ ।



Digitized by PPRACHIN, SOA

# ଶୃଙ୍ଖଳା ପ୍ରହରୀ

ସମୟ - ୮ ପିରିୟଡ୍



- ଚିତ୍ରରେ କଣ ସବୁ ଦେଖୁଛ ?
- ଏଇ ଚିତ୍ରଟି କେଉଁ ସ୍ଥାନର ?
- ତଳ ଚିତ୍ରରେ ଥିବା ଜିନିଷଗୁଡ଼ିକର ନାମ କହ ।



୧. ____________ ୫. ____________
୨. ____________ ୬. ____________
୩. ____________ ୭. ____________
୪. ____________



(ପୋଲିସ୍‌ର ପୋଷାକ)



(ଟ୍ରାଫିକ୍ ପୋଲିସର ପୋଷାକ)



- ପୋଲିସ୍ କେଉଁ କେଉଁ କାମ କରନ୍ତି, ଲେଖ ।

____________
____________
____________
____________
____________
____________

- ଏମାନେ ସବୁ ଥାନାର କର୍ମଚାରୀ

୧. ଇନିସ୍‌ପେକ୍ଟର ୨. ସବ୍-ଇନିସ୍‌ପେକ୍ଟର ୩. ସହକାରୀ ସବ୍-ଇନିସ୍‌ପେକ୍ଟର
୪. ହାବିଲ୍‌ଦାର୍ ୫. କନେଷ୍ଟବଳ ୬. ଗ୍ରାମରକ୍ଷୀ



Digitized by PPRACHIN, SOA

■ ପୋଲିସ୍‌କୁ ଆମେ ବନ୍ଧୁବୋଲି କାହିଁକି କହିବା ?

- ______________________________
- ______________________________
- ______________________________
- ______________________________
- ______________________________
- ______________________________

■ ପୋଲିସ୍ ଶାନ୍ତି ଶୃଙ୍ଖଳା ରକ୍ଷା କରେ । ଟ୍ରାଫିକ୍ ନିୟନ୍ତ୍ରଣ ମଧ୍ୟ କରେ । ଯୁଦ୍ଧ ସମୟରେ ସର୍ବସାଧାରଣ ଅନୁଷ୍ଠାନର ନିରାପତ୍ତା ରକ୍ଷା କରେ ଓ ଗୁପ୍ତ ଖବର ସଂଗ୍ରହ କରେ ।




■ ପୋଲିସ୍‌କୁ ସାହାଯ୍ୟ କରୁଥିବା କେତେକ ପଶୁ ପକ୍ଷୀ :

ଚୋରୀ ଜିନିଷ ଠାବ କରିବାରେ : ______________________________
ଚୋରକୁ ଧରିବାରେ : ______________________________
ଖବର ପଠାଇବାରେ : ______________________________
ଅପରାଧୀକୁ ଠାବ କରିବାରେ : ______________________________

■ ପୋଲିସ୍ କେଉଁ କେଉଁ ସ୍ଥାନରେ ଶୃଙ୍ଖଳା ରକ୍ଷା କରେ ?

- ______________________________
- ______________________________
- ______________________________
- ______________________________
- ______________________________

<u>ତୁମ ପାଇଁ କାମ</u> :

କୌଣସି ମେଳା ମହୋତ୍ସବରେ ପୋଲିସ୍ ବନ୍ଧୁଙ୍କୁ ଭେଟି ସେଦିନର ତାଙ୍କର ଅଭିଜ୍ଞତା ସଂଗ୍ରହ କର ।

୧. କେଉଁମାନେ ପୋଲିସ୍ ବିଭାଗରେ କାମ କରନ୍ତି, ଚିହ୍ନଟ କର ।
ଫରେଷ୍ଟର, ଗ୍ରାମରକ୍ଷୀ, କନେଷ୍ଟବଳ, ଜି.ପି ଓ, ଏ.ଏସ୍.ଆଇ, ତହସିଲ୍‌ଦାର, ଡି.ଏସ୍.ପି

୨. | ଥାନା, ଦମ୍‌କଳ, ଟ୍ରାଫିକ୍ |

ଉପର ବାକ୍ସରେ ଥିବା ଅନୁଷ୍ଠାନ ବ୍ୟତୀତ ଆଉ କେଉଁ ଅନୁଷ୍ଠାନରେ ପୋଲିସ୍ କର୍ମଚାରୀ କାର୍ଯ୍ୟରତ ଥାଆନ୍ତି, ତା'ର ଏକ ତାଲିକା ପ୍ରସ୍ତୁତ କର ।

◆ ______________ ◆ ______________
◆ ______________ ◆ ______________
◆ ______________ ◆ ______________
◆ ______________ ◆ ______________



Digitized by PPRACHIN, SOA

### କ'ଣ ଶିଖିବେ

ଥାନା ଓ ସେଥିରେ କାର୍ଯ୍ୟ କରୁଥିବା କର୍ମଚାରୀଙ୍କ କାର୍ଯ୍ୟ ବିଷୟରେ ଜାଣିବେ ।

### ସୂଚନା

ଥାନାର ବିଭିନ୍ନ କର୍ମଚାରୀ, ସେମାନଙ୍କ ପୋଷାକ ଓ କାର୍ଯ୍ୟ, ପୋଲିସ୍‌କୁ ସାହାଯ୍ୟ କରିବାରେ କୁକୁର ଓ ପାରାର ଭୂମିକାକୁ ଚିତ୍ର ଓ ଶିକ୍ଷଣ କାର୍ଯ୍ୟ ମାଧ୍ୟମରେ ପାଠ ବହିରେ ଦିଆଯାଇଛି ।

### ପ୍ରସ୍ତୁତି

- ପୋଲିସ୍‌ର ସାହସିକ କାର୍ଯ୍ୟ ସଂପର୍କିତ ଖବରକାଗଜ ପ୍ରକାଶିତ ଅଂଶ ସଂଗ୍ରହ କରନ୍ତୁ ।
- ପିଲାଙ୍କୁ ପାଞ୍ଚଦଳ କରି ପ୍ରତି ଦଳକୁ ପାଞ୍ଚଖଣ୍ଡ ଅଲଗା ଅଲଗା ଖବର ଥିବା ଖବରକାଗଜର ଅଂଶ ଦିଆଯିବ । ପ୍ରତି ଦଳ ପୋଲିସର କାର୍ଯ୍ୟକୁ ଉପସ୍ଥାପନ କରିବେ ।
- ଚୋର ପୋଲିସ୍ ଖେଳ ପିଲାମାନଙ୍କୁ ଖେଳାନ୍ତୁ ।
- ବିଭିନ୍ନ ପରିପ୍ରେକ୍ଷୀରେ ପୋଲିସ୍‌ର କାର୍ଯ୍ୟକୁ ପିଲାମାନଙ୍କୁ ବୁଝାନ୍ତୁ ।
- ପିଲାଙ୍କ ମନରେ ପୋଲିସ୍ ପ୍ରତି ଥିବା ଭୟକୁ ଦୂରୀଭୂତ କରି ପୋଲିସ୍ ଆମର ବନ୍ଧୁ ଏହି ଧାରଣାକୁ ଦୃଢ଼ୀଭୂତ କରନ୍ତୁ ।
- ନିଜ ଗାଁରେ ପୋଲିସ୍‌କୁ ଦେଖିବା ବେଳେ ନିଜ ନିଜ ଅନୁଭୂତିକୁ ପିଲାମାନେ କହିବେ ।
- ପୋଲିସ୍ ପ୍ୟାରେଡ୍ ଦେଖି (ଚିତ୍ର ଦେଖି) ପ୍ୟାରେଡ୍ ଅଭ୍ୟାସ କରିବେ ।

### ଆମେ ଜାଣିବା

ସହରାଞ୍ଚଳରେ ମହିଳାମାନଙ୍କ ଅଭିଯୋଗ ଓ ସମସ୍ୟା ବୁଝିବା ପାଇଁ ସ୍ୱତନ୍ତ୍ର ମହିଳା ଥାନା ପ୍ରତିଷ୍ଠା କରାଯାଇଛି । ଆଜିକାଲି ପୋଲିସ୍ ବିଭାଗର ସବୁ ପାହ୍ୟାରେ ମହିଳାମାନଙ୍କୁ ମଧ୍ୟ ନିଯୁକ୍ତି ଦିଆଯାଇଛି ।

ପୋଷାକ, ବ୍ୟାଚ୍ ଓ ବିଭିନ୍ନ ସଙ୍କେତ ଦେଖି ବିଭିନ୍ନ ପାହ୍ୟାକୁ ଚିହ୍ନି ହୁଏ, ଯଥା-

- ଖାକି ପୋଷାକ ଓ ଛାତିରେ ଧାତବ ନମ୍ବର- କନେଷ୍ଟବଳ ।
- ଖାକି ପୋଷାକ ଓ ବାହୁର ଉପରି ଭାଗରେ ସଂକେତ - ହାବିଲ୍‌ଦାର୍
- ଖାକି ପୋଷାକ ଓ ବାହୁର ଉପରି ଭାଗରେ ଗୋଟିଏ ଧାତବ ତାରା-ଏ. ଏସ୍. ଆଇ
- ଖାକି ପୋଷାକ ଓ ବାହୁର ଉପରି ଭାଗରେ ଦୁଇଟି ଧାତବ ତାରା-ଏସ୍. ଆଇ
- ଖାକି ପୋଷାକ ଓ ବାହୁର ଉପରି ଭାଗରେ ତିନୋଟି ଧାତବ ତାରା- ସର୍କଲ୍ ଇନ୍‌ସପେକ୍ଟର ବା ଓ.ଆଇ.ସି
- ଖାକି ପୋଷାକ ଓ ବାହୁର ଉପରି ଭାଗରେ ତିନୋଟି ଧାତବ ତାରା ଓ ଧାତବ O.P.S - ଡି.ଏସ୍. ପି.
- ଖାକି ପୋଷାକ ଓ ବାହୁର ଉପରି ଭାଗରେ ଧାତବ I.P.S ଓ ଧାତବ ଅଶୋକ ସ୍ତମ୍ଭ - ଏସ୍. ପି.
- ପୋଲିସ୍‌କୁ ଗ୍ରାମାଞ୍ଚଳର ଶାନ୍ତି ଶୃଙ୍ଖଳା ରକ୍ଷା ସଂପର୍କୀୟ ଖବର ଦେବା ପାଇଁ ଗ୍ରାମରକ୍ଷୀ ଓ ସହରାଞ୍ଚଳରେ ପୋଲିସ୍‌ର କାମରେ ସାହାଯ୍ୟ କରିବା ପାଇଁ ଗୃହରକ୍ଷୀ ବା ହୋମ୍‌ଗାର୍ଡ଼ ନିଯୁକ୍ତି ହୋଇଥାନ୍ତି ।

### ଦଳଗତ କାର୍ଯ୍ୟ

ପିଲାମାନେ ଦୁଇ ଦଳ ହୋଇ ବିଭିନ୍ନ ପାହ୍ୟାର ପୋଲିସ୍ କର୍ମଚାରୀ ଓ ସେମାନଙ୍କ ପୋଷାକ ବା ବ୍ୟାଚ୍ ସଂପର୍କୀୟ ଖେଳ ଖେଳିବେ ।(ଚିତ୍ର ମାଧ୍ୟମରେ)



Digitized by PPRACHIN, SOA

**ଅନ୍ୟ କାର୍ଯ୍ୟ**

- ନିଜ ଗାଁ ବା ଅଞ୍ଚଳର ଯେଉଁମାନେ ପୋଲିସ୍ ବିଭାଗରେ କାର୍ଯ୍ୟ କରନ୍ତି ସେମାନଙ୍କୁ ଚିହ୍ନିବେ ଓ ସେମାନଙ୍କ ସହିତ କଥାଭାଷା ହେବେ ।
- ନିଜ ଗାଁର ଦାୟିତ୍ୱରେ ଥିବା ଗ୍ରାମରକ୍ଷୀଙ୍କୁ ଜାଣିବେ ଓ ତା'ର କାର୍ଯ୍ୟ କ'ଣ ପଚାରି ଲେଖିବେ ।

**ପ୍ରକଳ୍ପ**

- ଶିକ୍ଷକଙ୍କ ସହ ପିଲାମାନେ ନିକଟସ୍ଥ ଥାନା ବା ଫାଣ୍ଡିକୁ ଯାଇ ଯାହା ସବୁ ଦେଖିଲେ ତାହାର ଏକ ବିବରଣୀ ପ୍ରସ୍ତୁତ କରିବେ ।
- ଖବରକାଗଜରୁ ପୋଲିସ୍‌ର କାର୍ଯ୍ୟ ସମ୍ପର୍କରେ ପ୍ରକାଶିତ ସମ୍ବାଦ ସଂଗ୍ରହ କରି (ଅତି କମ୍‌ରେ ୫ଟି) ଏକ କାର୍ଡ୍‌ବୋର୍ଡ୍‌ରେ ଲଗାଇ ଶ୍ରେଣୀ ଗୃହରେ ଉପସ୍ଥାପନ କରିବେ ।

ଉପକରଣ :

- ପୋଲିସ୍‌ର ବିଭିନ୍ନ ସାହସିକ କାର୍ଯ୍ୟ ସଂପର୍କିତ ଖବର କାଗଜ ଅଂଶ
- ଟ୍ରାଫିକ୍ ପୋଲିସ୍‌ର ଚିତ୍ର
- ପୋଲିସ୍ ହୁଇସିଲ୍, ହ୍ୟାଣ୍ଡକପ୍, ଲାଠି ।
- ପୋଲିସ୍‌ର ବିଭିନ୍ନ ବ୍ୟାଚ୍‌ର ଚିତ୍ର ।

## ପ୍ରଥମ ଏକକ ପରୀକ୍ଷଣ



Digitized by PPRACHIN, SOA

# ଡାକଘର

**ସମୟ - ୮ ପିରିୟଡ୍**

ଦି'ପହର ବେଳ । ବୁଢ଼ୀଟି ଗାଁ ଦାଣ୍ଡରେ ଚାଲିଥାଏ । ପଛରୁ ଡାକ ଶୁଭିଲା 'ଚିଠି' । ଗାଁ ଡାକ ପିଅନ । ପୁଅ ପ୍ରେମା ପାଖରୁ ଆସିଥିବା ଲଫାପା ଖଣ୍ଡକ ବଢ଼ାଇ, ତା' ବ୍ୟାଗରୁ କଳା ଡବାଟି ବାହାର କଲା । ବୁଢ଼ୀର ବାଁ ହାତ ବୁଢ଼ା ଆଙ୍ଗୁଠିରୁ ଟିପନେଇ କାଗଜ ଚିରୁକୁଟି ସହିତ ବଢ଼ାଇଦେଲା ପାଞ୍ଚଟା ଶହେଟଙ୍କିଆ ନୋଟ୍ । ଟଙ୍କାକୁ କାନିରେ ବାନ୍ଧି ବୁଢ଼ୀ ଚିଠିକୁ ବହେ ଗେଲ କଲା । ନାକ ସିଧା ଚାଲିଲା ନାରଣ ପାଖକୁ । ନାରଣଟି ପାଠୁଆ ପିଲା । ଭାରି ଭରସା ତା' ଉପରେ । ଚିଠି ପଢ଼ି ପ୍ରେମାର ଭଲ ଖବର ଶୁଣାଇଲା । କାନିରୁ ଟଙ୍କା ଫିଟେଇବା ବେଳେ ପ୍ରେମା ବୋଉ ଚୁପଚୁପ୍ କରି କହିଲା, "ନାରଣ, ଟଙ୍କାତକ ତୋରି ପାଖେ ଥାଉ । ମୋର ତ ଏକୁଟିଆ ଘର । କେତେବେଳେ କ'ଣ ।" ନାରଣ କହିଲା, "ଖୁଡ଼ୀ, ଟଙ୍କା ମୋ ପାଖରେ ରହିବା ଅପେକ୍ଷା ଡାକଘରେ ରଖିବା ନିରାପଦ । ତା ଛଡ଼ା ଏଥିପାଇଁ ତୁମକୁ ସୁଧ ବି ମିଳିବ । ଚାଲ, ମୁଁ ପାସ୍ ବହିଟିଏ ଖୋଲିଦେବି ।

ଡାକଘରେ ପହଞ୍ଚି ବୁଢ଼ୀ କାବା । କେଉଁଠି ଚିଠି ଉପରେ ମୋହର ବାଡ଼ିଆ ଚାଲିଛି ତ କେଉଁଠି ଡାକମୁଣିରେ ଚିଠି ବନ୍ଧା ହେଉଛି । ପାଖ ଟେବୁଲ ଉପରେ ଥୁଆ ହୋଇଥିବା ଟେଲିଫୋନ୍ କ୍ରିଂ କ୍ରିଂ ବାଜି ଉଠିଲା । ବୁଢ଼ୀ ଚମକି ପଡ଼ି ଘୁଞ୍ଚିଗଲା ଟିକେ ପଛକୁ । ଡାକମାଷ୍ଟ୍ରେ ଫୋନ୍ ଉଠେଇ କହିଲେ, "ହ୍ୟାଲୋ! ହ୍ୟାଲୋ!" ତା'ପରେ ମନକୁମନ କାହା ସହିତ କଥାବାର୍ତ୍ତା ହେଲେ । ଏସବୁ ଭିତରେ ନାରଣ ପାସ୍ ବହି ଖୋଲି ବୁଢ଼ୀ ହାତରେ ଧରେଇ ଦେଲା । ଫେରିବା ବେଳେ ବୁଢ଼ୀ ପଚାରିଲା, "କହିଲୁ ବାପା, ଚିଠିଟା ଏଠିକି ଆସିଲା କେମିତି ?" ନାରଣ କହିଲା, "ପ୍ରେମା ଏଠିକାର ଠିକଣା ଚିଠି ଉପରେ ଲେଖି ଡାକ ବାକ୍ସରେ ପକାଇଲେ । ଡାକବାଲା ଏଇ ଠିକଣା ଅନୁସାରେ ଏଠିକି ପଠେଇ ଦେଲେ । ଆଉ ତା'ପରେ ତମେ ସବୁ ଜାଣିଛ ।"

## ଅଭ୍ୟାସ

୧. ଏଗୁଡ଼ିକୁ ଚିହ୍ନି ପାରୁଛ ?
କହିଲ ଦେଖି –




୨. ପୋଷ୍ଟକାର୍ଡ଼, ଲଫାପା, ଅନ୍ତର୍ଦ୍ଦେଶୀୟ ପତ୍ର ସଂଗ୍ରହ କରି ତା'ର ମୂଲ୍ୟ ପୂରଣ କର ଓ ରଙ୍ଗ ଲେଖ ।

| ଜିନିଷର ନାମ | ମୂଲ୍ୟ | ରଙ୍ଗ |
|---|---|---|
| ୧. ଲଫାପା | | |
| ୨. ପୋଷ୍ଟକାର୍ଡ଼ | | |
| ୩. ଅନ୍ତର୍ଦ୍ଦେଶୀୟ ପତ୍ର | | |

୩. ନିଜକୁ ଡାକବାଲା ମନେକରି ଅଭିନୟ କର ଓ ଗୀତଟି ବୋଲ ।



ନାଆଁ ମୋର ଡାକବାଲାଟି
ଘର ଘର ବୁଲି ବାଣ୍ଟଇ ଚିଠି
ନାଆଁ ମୋର ଡାକବାଲାଟି ।
ଦେହରେ ମୋର ଖାକି ପୋଷାକ,
କାନ୍ଧେ ଥଳି ମୋ ରୂପ ଭେକ,
ସକାଳ ପହରୁ ବୁଲେ ଗାଁ ଗଳି,
ବେଳବୁଡ଼େ ମୁଁ ଘର ଫେରେଟି,
ନାଆଁ ମୋର ଡାକବାଲାଟି ।
ସରକାରୀ କରମଚାରୀ,
ବଡ଼ ବିଶ୍ୱାସୀ ମୁଁ ସବୁରି,
କାହାର ବା ଟଙ୍କା କାହା ପାରସଲ,
ଠିକ୍ ଠିକ୍ କରି ନେଇ ଦିଏଟି,
ନାଆଁ ମୋର ଡାକବାଲାଟି ।

୪. ଏକ ପ୍ରକାର ଶବ୍ଦଗୁଡ଼ିକୁ ମନେରଖ ।
ଟେଲିଗ୍ରାମ୍, ଟେଲିଫୋନ୍, ଟେଲିଗ୍ରାଫ୍



Digitized by PPRACHIN, SOA

୫. ଗୋଟିଏ ପୋଷ୍ଟକାର୍ଡ଼କୁ ସ୍କେଲ୍ ସାହାଯ୍ୟରେ ମାପି ତା'ର ଲମ୍ବ ଓ ପ୍ରସ୍ଥ ଲେଖି ରଖ । କାହା ପରେ କିଏ କ୍ରମ ଅନୁସାରେ ସଜାଅ ।

| ପୋଷ୍ଟ କାର୍ଡ଼ର ଲମ୍ବ ——— । ପ୍ରସ୍ଥ ——— । |
|---|

(କ) ଚିଠି ଲେଖିବା ________________

(ଖ) ପୋଷ୍ଟକାର୍ଡ଼ କିଣିବା ________________

(ଗ) ଡାକ ବାକ୍ସରେ ପକାଇବା ________________

(ଘ) ଠିକଣା ଲେଖିବା ________________

୬. ମୂଲ୍ୟର କ୍ରମ ଅନୁସାରେ ସଜାଅ (କମ୍‌ରୁ ବେଶୀ)
ଲଫାପା, ପୋଷ୍ଟକାର୍ଡ଼, ଅନ୍ତର୍ଦ୍ଦେଶୀୟ ପତ୍ର ।

________________

୭. ଶୂନ୍ୟସ୍ଥାନ ପୂରଣ କର ।

କ) ________ ଡାକଘରର ମୁଖ୍ୟ ଅଟନ୍ତି ।

ଖ) ଡାକବାଲା ବା ପୋଷ୍ଟମ୍ୟାନ୍ ଗାଁ ଗାଁ ବୁଲି ________ ବାଣ୍ଟେ ।

ଗ) ଚିଠି ବାକ୍ସଗୁଡ଼ିକ ________ ଜାଗାମାନଙ୍କରେ ଥାଏ ।

୮. ତୁମ ଘରକୁ କିଏ କେବେ ଟଙ୍କା ପଠାଇଛନ୍ତି କି ? ଯଦି ପଠାଇଛନ୍ତି କିଏ ଓ କିପରି ପଠାଇଛନ୍ତି ଲେଖ ।

________________

୯. ଡାକଘରେ ଚିଠି ବ୍ୟତୀତ ଆଉ କ'ଣ ମିଳେ ?

• ---------- • ---------- • ----------
• ---------- • ---------- • ----------
• ---------- • ---------- • ----------

୧୦. କେତେବେଳେ ଖୋଲେ ଓ ବନ୍ଦ ହୁଏ ?

| | ଖୋଲିବା ସମୟ | ବନ୍ଦ ହେବା ସମୟ |
|---|---|---|
| ତୁମ ଗାଁର ପୋଷ୍ଟ ଅଫିସ୍ — | ________ | ________ |
| ବିଦ୍ୟାଳୟ | ________ | ________ |
| ଡାକ୍ତରଖାନା | ________ | ________ |

୧୧. କେଉଁଟିକୁ ବେଶୀ ଲୋକ ବ୍ୟବହାର କରନ୍ତି ? ________________
ପୋଷ୍ଟକାର୍ଡ଼, ଲଫାପା ଓ ଅନ୍ତର୍ଦ୍ଦେଶୀୟ ପତ୍ର ।

ତୁମ ପାଇଁ କାମ :

୧. ଖାତାଟିରେ ଦେଶ ବିଦେଶର ଟିକେଟ୍ ସଂଗ୍ରହ କରି ମଡ଼ାଅ ।

୨. ଲଫାପା କିପରି ତିଆରି ହୁଏ ଶିଖ ।

(କ) ଫାଳେ କାଗଜର ଦୁଇ ବିପରୀତ କୋଣକୁ ଯୋଡ଼ି ସମାନ କର ।

(ଖ) ଦୁଇ ପାଖରେ ଥିବା ବଳକା କାଗଜକୁ କାଟି ବାହାର କରିଦିଅ ।

(ଗ) କାଗଜଟି ମେଲାକରି ଏହାର ଠିକ୍ ମଝିରେ ଯୋଡ଼ିଥିବା ଦୁଇ କୋଣକୁ ଏକାଠି କରି ଅଠା ଦିଅ ।

(ଘ) ଅନ୍ୟ ଯେ କୌଣସି ଗୋଟିଏ ପଟକୁ ତା ସହିତ ମିଶାଇ ଅଠା ଦିଅ ।




୩. | ପଚାରି ବୁଝ । | ଆଗେ ଡାକଘର ନଥିବା ବେଳେ ଖବର କିପରି ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଯାଉଥିଲା ?

୪. ଦୂରରେ ଥିବା ତୁମ ବନ୍ଧୁଙ୍କ ନିକଟକୁ ଗୋଟିଏ ଚିଠି ଲେଖ ।

________________
________________
________________
________________
________________
________________
________________





Digitized by PPRACHIN, SOA

**କ'ଣ ଶିଖିବେ** ଡାକଘର ଓ ଏହାର କାର୍ଯ୍ୟ ବିଷୟରେ ଜାଣିବେ ।

**ସୂଚନା**

- ଡାକଘରେ ବ୍ୟବହାର ହେଉଥିବା ବିଭିନ୍ନ ଜିନିଷ ବିଷୟରେ ପାଠରେ ଚିତ୍ର ମାଧ୍ୟମରେ ସୂଚନା ଦିଆଯାଇଛି ।

**ପ୍ରସ୍ତୁତି**

- କିଛି ବ୍ୟବହୃତ ପୁରୁଣା ବା ନୂଆ ଲଫାପା, ପୋଷ୍ଟକାର୍ଡ଼, ଅନ୍ତର୍ଦ୍ଦେଶୀୟ ପତ୍ର, ମନିଅର୍ଡ଼ର୍ ଫର୍ମ ସଂଗ୍ରହ କରି ପିଲାମାନଙ୍କୁ ଗୋଲେଇ ଆକାରରେ ବସାଇ ସେଗୁଡ଼ିକୁ ବାଣ୍ଟି ଦିଅନ୍ତୁ । ପିଲାମାନେ ତାକୁ ଦେଖି ଗୋଟି ଗୋଟି କରି ଚିହ୍ନନ୍ତୁ । ସେଗୁଡ଼ିକର ମୂଲ୍ୟ ଓ ବ୍ୟବହାର ବିଷୟରେ କହନ୍ତୁ ।
- ଡାକଘରର କାର୍ଯ୍ୟ ଓ ସେଠାରେ କାମ କରୁଥିବା ବିଭିନ୍ନ କର୍ମଚାରୀଙ୍କ କାର୍ଯ୍ୟକୁ ପିଲାମାନଙ୍କୁ ବୁଝାନ୍ତୁ ।

**ପିଲାଙ୍କ କାମ**

- ପ୍ରଥମ ଚିତ୍ରରେ ଦିଆଯାଇଥିବା ବିଭିନ୍ନ ବିଷୟରେ ଧାଡ଼ିଏ ଲେଖାଏଁ ପିଲାମାନେ କହିବେ ।
- ଡାକ ପିଅନ କ'ଣ କରେ ସେ ବିଷୟରେ କହିବେ ଓ ଲେଖିବେ ।
- ଡାକଘରେ ମିଳୁଥିବା ବିଭିନ୍ନ ଜିନିଷ ଓ ଟିକେଟ୍‌ର ଏକ ତାଲିକା କରିବେ ।
- ପୋଷ୍ଟକାର୍ଡ଼ରେ ସାଙ୍ଗ ନିକଟକୁ ପତ୍ର ଲେଖି ଡାକବାକ୍ସରେ ପକାଇବେ ।
- ଡାକଘରେ କେଉଁମାନେ କାମ କରନ୍ତି ତା'ର ଏକ ତାଲିକା ପ୍ରସ୍ତୁତ କରିବେ ।

**ଉପକରଣ** ଡାକଘରର ଚିତ୍ର, ଚିତ୍ରରେ ଧାଡ଼ି ବାନ୍ଧି ଲୋକମାନେ ବିଭିନ୍ନ କାମ କରୁଥିବେ ଓ କର୍ମଚାରୀମାନେ କାର୍ଯ୍ୟରତ ଥିବେ । ପୋଷ୍ଟକାର୍ଡ଼, ଲଫାପା, ଅନ୍ତର୍ଦ୍ଦେଶୀୟ ପତ୍ର, ବିଭିନ୍ନ ମୂଲ୍ୟର ଷ୍ଟାମ୍ପ୍, ପାସବୁକ୍, ଷ୍ଟାମ୍ପ, ଅଠା, ଛୁଞ୍ଚି ସୂତା, ଚିଠି ବାକ୍ସର ମଡ଼େଲ୍

**ଆମେ ଜାଣିବା**

- ଆଜିକାଲି କମ୍ପ୍ୟୁଟର ସାହାଯ୍ୟରେ ଓଜନ, ମୂଲ୍ୟ ନିର୍ଦ୍ଧାରଣ ହିସାବ ଓ ଲେଖାକାର୍ଯ୍ୟ ହେଉଛି । ସ୍ପିଡ୍ ପୋଷ୍ଟରେ ଚିଠି ପଠାଇଲେ ଶୀଘ୍ର ଯାଏ ଓ ସେଥିରେ ଅଧିକ ମୂଲ୍ୟର ଡାକ ଟିକଟ ଲଗାଯାଏ । ଜିଲ୍ଲାର ମୁଖ୍ୟ ଡାକଘରେ ବିଦେଶ ଯିବା ପାଇଁ ପାସ୍‌ପୋର୍ଟ ତିଆରି କରିହୁଏ । ପୋଷ୍ଟାଲ୍ ଜୀବନ ବୀମା, ମାସିକିଆ ରୋଜଗାର ଜମାଯୋଜନା, ସ୍ୱଳ୍ପ ସଞ୍ଚୟ ଯୋଜନା ପ୍ରଭୃତିର ସୁବିଧା ମିଳେ । ସ୍ୱଳ୍ପ ସଞ୍ଚୟ ଯୋଜନାରେ ଜମାକାରୀମାନଙ୍କୁ ଲଟେରୀ ଉଠାଣ କରି ଅର୍ଥ ପୁରସ୍କାର ମିଳି ଥାଏ । ପୂର୍ବରୁ ଡାକଘର ଜରିଆରେ ଟେଲିଗ୍ରାମ୍ ସୁବିଧା ଥିଲା ।

**ଦଳଗତ କାର୍ଯ୍ୟ**

- ପିଲାମାନଙ୍କୁ ଦୁଇ ଦଳକରି ବସାଯିବ । ଗୋଟିଏ ଦଳ ଡାକ ଘରେ ମିଳୁଥିବା ବିଭିନ୍ନ ଜିନିଷ ଦେଖାଇବେ । ଅନ୍ୟ ଦଳଟି ତା'ର ମୂଲ୍ୟ କହିବେ ।
- ଗୋଟିଏ ଦଳ ଡାକଘରେ ହେଉଥିବା କାମ କହିବେ । ଅନ୍ୟ ଦଳଟି ତାହା କିପରି କରାଯାଏ କହିବେ ।
- ଗୋଟିଏ ଦଳ ଡାକଘରେ କାମ କରୁଥିବା କର୍ମଚାରୀମାନଙ୍କ ପଦବୀ କହିବେ ଅନ୍ୟ ଦଳଟି ସେମାନଙ୍କର କାମ କହିବେ ।
- ଚିଠି ଲେଖିବାପାଇଁ ପୋଷ୍ଟକାର୍ଡ଼ ଓ ଅନ୍ତର୍ଦ୍ଦେଶୀୟ ପତ୍ର ମଧ୍ୟରେ ପାର୍ଥକ୍ୟ କ'ଣ କହିବେ ।

**ପ୍ରକଳ୍ପ କାର୍ଯ୍ୟ**

- ନିଜ ଗ୍ରାମ କିମ୍ବା ନିକଟରେ ଥିବା ଡାକଘର ଯାଇ ବୁଲି ଆସିବେ ଡ୍ରଇଁସିଟ୍‌ରେ ଗୋଟିଏ ଚିଠି ବାକ୍ସ ତିଆରି କରିବେ ।
- ବିଭିନ୍ନ ପ୍ରକାରର ପୁରୁଣା ଡାକ ଟିକଟ୍ ସଂଗ୍ରହ କରି ଏକ ଆଲ୍‌ବମ୍ ପ୍ରସ୍ତୁତ କରିବେ ।

**ଉପକରଣ** ଚିଠି ବାକ୍ସ ତିଆରି କରିବା ପାଇଁ ମୋଟା କାଗଜ ।



Digitized by PPRACHIN, SOA

## ଆମରି ଶାସନ ଆମରି ହାତେ

ସମୟ - ୨୦ ପିରିୟଡ୍

ଖେଳନ୍ତୁଟି । ବିଦ୍ୟାଳୟ ଖେଳପଡ଼ିଆ ପାଖକୁ ଲାଗି ଆମ୍ବଗଛ । ମୂଳରେ ବସିଛନ୍ତି ୧୦/୧୨ ଟି ପିଲା । ନିତିଆ ଖାତାଟିଏ ମୋଡ଼ି କାହାଳୀ ପରି କରି ଭାଷଣ ଦେଉଥାଏ....

ନିତିଆ- ଭାଇମାନେ, ''ଭୋଟ ତ ସରିଲା । ପଞ୍ଚାୟତର ସବୁଲୋକ ମତେ ଭୋଟଦେଇ ପାଞ୍ଚ ବର୍ଷ ପାଇଁ ସରପଞ୍ଚ କରି ବାଛିଲେ ! ତୁମ ୱାର୍ଡ଼ର ଲୋକମାନେ ତୁମ୍ଭମାନଙ୍କୁ ୱାର୍ଡ଼ମେମ୍ବର କରି ବାଛିଛନ୍ତି । ଏବେ ତୁମର ଆଉ ଗୋଟେ ବାଛିବା କାମ ଅଛି ।''



୧ମ- ଆମେ ପୁଣି କ'ଣ ବାଛିବୁ ?

ନିତିଆ- ତୁମେ ତୁମ ଭିତରୁ ଜଣକୁ ନାଏବ ସରପଞ୍ଚ ବାଛ ।

୨ୟ- ଏ କ'ଣ ବଡ଼ କଥା ? ଆମ ବଟିଆ ଭାଇ ଏବେ ନାଏବ ସରପଞ୍ଚ ହୁଅନ୍ତୁ ।

ସମସ୍ତେ- ହଁ , ହଁ ! ସେଇଆ ହେଉ । ବଟ ଭାଇ ଆମ ନାଏବ ସରପଞ୍ଚ ।

ନିତିଆ- ହଉ, ଏବେ ତ ବଛା ବଛି କାମ ସରିଲା । ପଞ୍ଚାୟତର ଉନ୍ନତି କଥା ପକେଇବା ।

୩ୟ- ଭାଇ, ତମେ ତ ସରପଞ୍ଚ । ଗ୍ରାମ ପଞ୍ଚାୟତର ମୁଖିଆ । ଆମେ ଆଉ ଉନ୍ନତି କଥା କ'ଣ ଚିନ୍ତା କରିବୁ ।

ନିତିଆ- (ହସି) ଦେଖ ଭାଇମାନେ ! ତମେ ସବୁ ଭୁଲ୍ ବୁଝୁଛ । ଆମେ ସମସ୍ତେ ପଞ୍ଚାୟତ ଅଫିସ୍‌ରେ ସଭାକରି କେଉଁ ସାହିରେ କ'ଣ ହେବ, ସେ ବିଷୟରେ ଆଲୋଚନା କରିବା । ପ୍ରତି ୱାର୍ଡ଼ର ୱାର୍ଡ଼ମେମ୍ବର ଏହି କାମର ଦାୟିତ୍ୱ ନେବେ ।

୪ର୍ଥ- ଆହେ ସବୁ ହେଲା ଯେ, ମୂଳକଥା,ଏସବୁ କାମ ପାଇଁ ଟଙ୍କା ଆସିବ କେଉଁଠୁ ?

ଶିକ୍ଷକ- କିରେ ନିତିଆ, (ପ୍ରବେଶ କରିଛନ୍ତି ଶିକ୍ଷକ) ଏଠି କ'ଣ ସବୁ ଚାଲିଛି ?

ନିତିଆ- ସାର୍, ଆମେ ଗୋଟିଏ ଦଳ ଗଢ଼ିଛୁ । ପ୍ରତିଦିନ କିଛି କିଛି ସାମାଜିକ ଅନୁଷ୍ଠାନର ଗଠନ, କାର୍ଯ୍ୟ ବିଷୟରେ ଅଭିନୟ ପରିବେଷଣ କରୁଛୁ । ଆଜି ଗ୍ରାମ ପଞ୍ଚାୟତ ବିଷୟରେ ଆଲୋଚନା ଚାଲିଛି । ହେଲେ, ପଞ୍ଚାୟତର ଉନ୍ନତି ପାଇଁ ଅର୍ଥ କେଉଁଠୁ ଆସିବ ସେ ବିଷୟରେ....

ଶିକ୍ଷକ - ଓଃ...... । ଶୁଣ, ପଞ୍ଚାୟତ ଭିତରେ ଥିବା ହାଟ, ନଦୀଘାଟ, ଫଳନ୍ତି ଗଛ, ମାଛପୋଖରୀ ପ୍ରଭୃତି ପ୍ରତି ବର୍ଷ ନିଲାମ କରାଯାଏ କିମ୍ବା କିଛି ବର୍ଷ ପାଇଁ ନିଲାମ ଦିଆଯାଏ । ଶଗଡ଼, ସାଇକେଲ୍, ରିକ୍ସା ଚଳାଚଳ ପାଇଁ ଟିକସ ଆଦାୟ କରାଯାଏ ।ଏହିଭଳି ଅର୍ଥ ସଂଗ୍ରହ କରାଯାଏ । ତା' ଛଡ଼ା ସରକାର ମଧ୍ୟ ପ୍ରତି ଗ୍ରାମ ପଞ୍ଚାୟତକୁ ଆର୍ଥିକ ସାହାଯ୍ୟ ଦେଇଥାନ୍ତି ।



୫ମ - ଆଛା, ନିତିଆ ଭାଇ ! ତୁମେ ତ ଜାଣ ଆମ ଗାଁ ଗହଳିର ପ୍ରାୟ ସବୁ ଲୋକ ଚାଷୀ । ସେମାନଙ୍କ ପାଇଁ ତ ସୁବିଧା ସୁଯୋଗ ଲୋଡ଼ା !

ନିତିଆ- ଠିକ୍ କହିଛ । ସେଥିପାଇଁ ସରକାର ପ୍ରତି ଗ୍ରାମ ପଞ୍ଚାୟତରେ ଚାଷୀମାନଙ୍କୁ ପରାମର୍ଶ ଦେବା ପାଇଁ ଗ୍ରାମସେବକ ନିଯୁକ୍ତ କରିଛନ୍ତି । ତା' ଛଡ଼ା ସୁବିଧା ଦରରେ ମଞ୍ଜି, ବିହନ, ସାର, କୀଟନାଶକ ଔଷଧ ଓ କୃଷି ଯନ୍ତ୍ରପାତି ମଧ୍ୟ ଯୋଗାଇ ଦେଉଛନ୍ତି । ହଁ, ତୁମେ ଆଉ ଗୋଟିଏ କଥା ମନେରଖ । ଗାଁ, ଗାଁ ସାହି ସାହି ମଧ୍ୟରେ ଯେଉଁ କଳିଗୋଳ ହୁଏ ତାକୁ ମଧ୍ୟ ତୁମ୍ଭେମାନେ ଏହି ପଞ୍ଚାୟତ ଅଫିସ୍‌ରେହିଁ ବସି ସମାଧାନ କରିପାରିବ ।



Digitized by PPRACHIN, SOA

୬ଷ- ସାର୍, ଗ୍ରାମ ପଞ୍ଚାୟତ ପରି ଆଉ କେଉଁ ଅନୁଷ୍ଠାନ କାର୍ଯ୍ୟ କରୁଛି ?

ଶିକ୍ଷକ- ଗ୍ରାମ ପଞ୍ଚାୟତ ପରି ବ୍ଲକ ସ୍ତରରେ ପଞ୍ଚାୟତ ସମିତି କାର୍ଯ୍ୟ କରିଥାଏ । ଏ ବିଷୟରେ ମୁଁ ତୁମକୁ ଆଉଦିନେ ବତାଇ ଦେବି । ଆଜି ତ ଖେଳ ଛୁଟି ସମୟ ସରିବାକୁ ହେଲାଣି । ତୁମେ ଏବେ ଶ୍ରେଣୀକୁ ଯାଅ ।



## ଅଭ୍ୟାସ

୧. ଶବ୍ଦ ବାଛି ଖାଲିଘର ପୂରଣ କର ।

| | | |
|---|---|---|
| (କ) ସରପଞ୍ଚ ରହିଥାନ୍ତି - | ଗ୍ରାମାଞ୍ଚଳ, ସହରାଞ୍ଚଳ, ପୌରାଞ୍ଚଳ | |
| (ଖ) ସରପଞ୍ଚ କାମ କରନ୍ତି- | ନିଜ ଅଞ୍ଚଳ ପାଇଁ, ଅନ୍ୟ ଅଞ୍ଚଳ ପାଇଁ, କୌଣସି ଅଞ୍ଚଳ ପାଇଁ ନୁହେଁ | |
| (ଗ) ସରପଞ୍ଚଙ୍କ କାର୍ଯ୍ୟକାଳ- | ୫ବର୍ଷ, ୬ ବର୍ଷ, ସବୁଦିନ ପାଇଁ | |
| (ଘ) ଗ୍ରାମ ପଞ୍ଚାୟତ ଟିକସ ଆଦାୟ କରନ୍ତି- | ହାଟ ବଜାରରୁ/ ଡାକ୍ତର ଖାନାରୁ/ ବିଦ୍ୟାଳୟରୁ | |
| (ଙ) ସରପଞ୍ଚ ଜଣେ- | ଲୋକ ପ୍ରତିନିଧି, ସରକାରୀ କର୍ମଚାରୀ, ବେସରକାରୀ କର୍ମଚାରୀ | |

୨. କେଉଁଟି ଗ୍ରାମ ପଞ୍ଚାୟତ ସହିତ ସଂପୃକ୍ତ ଓ କେଉଁଟି ନୁହେଁ, ତା'ର ଏକ ତାଲିକା କର ।




୩. ଗୋଲେଇ ଘରେ ଥିବା କେଉଁ କାମ ଗ୍ରାମ ପଞ୍ଚାୟତର ନୁହେଁ, ଚିହ୍ନାଅ ।






Digitized by PPRACHIN, SOA

ଗ୍ରାମ ପଞ୍ଚାୟତ ପରି ବ୍ଲକ୍‌ରେ ପଞ୍ଚାୟତ ସମିତି ଥାଏ । ବ୍ଲକରେ ଥିବା ସବୁ ଗ୍ରାମ ପଞ୍ଚାୟତକୁ ନେଇ ପଞ୍ଚାୟତ ସମିତି ଗଢ଼ା ହୋଇଥାଏ । ପଞ୍ଚାୟତ ସମିତିର ମୁଖ୍ୟ ହେଉଛନ୍ତି ସମିତି ଚେୟାରମ୍ୟାନ୍ ବା ସଭାପତି । ସମିତି ସଭ୍ୟ ଓ ସଭ୍ୟା ମିଶି ତାଙ୍କୁ ବାଛିଥା'ନ୍ତି । ପ୍ରତି ବ୍ଲକ୍‌ରେ ଜଣେ ବ୍ଲକ୍ ଉନ୍ନୟନ ଅଧିକାରୀ ବା (ବି.ଡ଼ି.ଓ) ନିଯୁକ୍ତ ହୋଇଥାନ୍ତି । ଚେୟାରମ୍ୟାନ୍‌ଙ୍କ ପରାମର୍ଶ ଅନୁସାରେ ସେ ବ୍ଲକ ପାଇଁ କାମ କରନ୍ତି । ତାଙ୍କୁ ସାହାଯ୍ୟ କରିବା ପାଇଁ ଅନ୍ୟ କର୍ମଚାରୀମାନେ ଥାଆନ୍ତି । ବ୍ଲକ ଅଫିସ୍‌ରେ ପଞ୍ଚାୟତ ସମିତି କାର୍ଯ୍ୟ ହୋଇଥାଏ ।




ସହର ଅଞ୍ଚଳର ଉନ୍ନତି ପାଇଁ ପୌର ପରିଷଦ ଗଢ଼ା ହୋଇଥାଏ । ଛୋଟ ଛୋଟ ସହରରେ ପୌର ପରିଷଦକୁ ବିଜ୍ଞାପିତ ଅଞ୍ଚଳ ପରିଷଦ(ଏନ୍.ଏ.ସି) କୁହାଯାଏ । ବଡ଼ ବଡ଼ ସହରରେ ପୌରସଭା ବା ମ୍ୟୁନିସିପାଲିଟି ଓ ନଗରମାନଙ୍କରେ ମହାନଗର ନିଗମ ହୋଇଥାଏ । ଏହାର ମୁଖ୍ୟ ହେଉଛନ୍ତି ଚେୟାରମ୍ୟାନ୍ । ୱାର୍ଡ଼ମେମ୍ବର ବା କାଉନସିଲର୍‌ମାନେ ସଭାପତିଙ୍କୁ ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ କରିଥାନ୍ତି । ସହରଗୁଡ଼ିକର ଶିକ୍ଷା, ସ୍ୱାସ୍ଥ୍ୟ, ପରିଷ୍କାର ପରିଚ୍ଛନ୍ନତା, ବିଦ୍ୟୁତ୍ ଯୋଗାଣ, ଜଳ ଯୋଗାଣ, ଗମନାଗମନ ଇତ୍ୟାଦିର କାର୍ଯ୍ୟ ଏମାନେ କରିଥାନ୍ତି । କିଛି ସରକାରୀ ସାହାଯ୍ୟ ଓ କିଛି କର ଆଦାୟ କରାଯାଇ ସହରର ଉନ୍ନତିରେ ଖର୍ଚ୍ଚ କରାଯାଏ । ଏସବୁ ଦେଖିବା ପାଇଁ ଜଣେ କାର୍ଯ୍ୟନିର୍ବାହୀ ଅଧିକାରୀ ଥାଆନ୍ତି । ସେ ସଭାପତିଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରନ୍ତି ।

ଆସ, ଦେଖିବା ।

■ କିଏ କିପରି ନିର୍ବାଚିତ ହୁଅନ୍ତି-

ଚେୟାରମ୍ୟାନ୍- ପୌରାଞ୍ଚଳର ସବୁ ଭୋଟରମାନଙ୍କ ଦ୍ୱାରା

କାଉନ୍‌ସିଲର- କେବଳ ନିଜ ୱାର୍ଡ଼ର ଭୋଟରମାନଙ୍କ ଦ୍ୱାରା

■ ପୌର ପରିଷଦର ସରକାରୀ କର୍ମଚାରୀ ⟶ କାର୍ଯ୍ୟନିର୍ବାହୀ ଅଧିକାରୀ

■ ପୌର ପରିଷଦ ଅଧୀନରେ କାର୍ଯ୍ୟ କରୁଥିବା ଅନୁଷ୍ଠାନ । — ସ୍ୱାସ୍ଥ୍ୟ ଓ ପରିମଳ ଅନୁଷ୍ଠାନ (ହେଲ୍‌ଥ ଅଫିସ୍)
- ସ୍ୱାସ୍ଥ୍ୟ ପରିମଳ ବ୍ୟବସ୍ଥା
- ମଶା ନିବାରଣ
- ଜଳ ବିଶୋଧନ
- ଜନ୍ମ ମୃତ୍ୟୁ ପଞ୍ଜିକରଣ

## ଅଭ୍ୟାସ

୧. ତୁମେ କେଉଁଠିକୁ ଯିବ, ତୀର ଚିହ୍ନ ଦିଅ ।

(କ) ତୁମର ଜଣେ ବନ୍ଧୁ ବେମାର ପଡ଼ିଲେ
(ଖ) ତୁମ ପଡ଼ିଶା ଘରେ ଚୋରି ହେଲେ
(ଗ) ତୁମ ଗାଁର ରାସ୍ତା ଭାଙ୍ଗିଗଲେ
(ଘ) ତୁମ ବାପା ଚାଷ ପାଇଁ ଋଣ ଦରକାର କଲେ
(ଙ) ତୁମ ଭଉଣୀ ପାଖକୁ ଟଙ୍କା ପଠାଇବାକୁ ହେଲେ
(ଚ) ତୁମ ଜମିରେ ଅନ୍ୟକେହି ଘର ତିଆରି କଲେ
(ଛ) ପାଖ ପଡ଼ିଶାରେ ହଇଜା ରୋଗ ହେଲେ
(ଜ) ଦୂର ଗାଁରେ ଥିବା ବନ୍ଧୁଙ୍କୁ ଏକ ଜରୁରୀ ଖବର ପଠାଇବାକୁ ହେଲେ
(ଝ) ତୁମକୁ ସର୍ଦ୍ଦି କାଶ ହେଲେ
(ଞ) ସାଇକେଲ୍‌ର ଟିକସ ପଇଠ କରିବାକୁ ହେଲେ
(ଟ) ତୁମ ଫସଲରେ ପୋକ ଲାଗିଲେ

ଡାକ୍ତରଖାନା
ଡାକଘର
ଗ୍ରାମ ପଞ୍ଚାୟତ
ବ୍ୟାଙ୍କ
ଥାନା
ଗ୍ରାମ ସେବକ

୨. ନିଜ କଥା ନିଜେ ଜାଣ ଓ ଲେଖ ।

| | ଗାଁ | ଗ୍ରାମ ପଞ୍ଚାୟତ | ପଞ୍ଚାୟତ ସମିତି |
|---|---|---|---|
| ତୁମ | | | |



Digitized by PPRACHIN, SOA

୩. କେଉଁଠି ଅଛି/ ଅଛନ୍ତି, ଲେଖ ।




୪. କ) ପୌର ପରିଷଦର ସଭ୍ୟମାନେ ________ ବର୍ଷ ପାଇଁ ନିର୍ବାଚିତ ହୁଅନ୍ତି ।
ଖ) ________ ପୌର ପରିଷଦର ମୁଖ୍ୟ ଅଟନ୍ତି ।
ଗ) ପୌର ପରିଷଦର କାର୍ଯ୍ୟ ________ ତଦାରଖ କରନ୍ତି ।
ଘ) ପୌରାଞ୍ଚଳକୁ କେତୋଟି ________ ରେ ଭାଗ କରାଯାଇଛି ।

୫. ପୌର ପରିଷଦ/ଗ୍ରାମପଞ୍ଚାୟତର କାର୍ଯ୍ୟର ତାଲିକା କର ।

★ ________ ★ ________
★ ________ ★ ________
★ ________ ★ ________
★ ________ ★ ________

ତୁମ ପାଇଁ କାମ :

୬. ପଚାରି ବୁଝ ଓ ଲେଖ ।

ତୁମ ସରପଞ୍ଚଙ୍କ ନାମ ________
ତୁମ ୱାର୍ଡ଼ର ନାମ ________
ତୁମ ୱାର୍ଡ଼ମେମ୍ବରଙ୍କ ନାମ ________
ତୁମ ପଞ୍ଚାୟତ ସମିତିର ଚେୟାରମ୍ୟାନ୍‌ଙ୍କ ନାମ ________



Digitized by PPRACHIN, SOA

**କ'ଣ ଶିଖିବେ** ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି, ପୌର ପରିଷଦ ପରି ଅନୁଷ୍ଠାନ ଗୁଡ଼ିକର କାର୍ଯ୍ୟ, ଗଠନ, ତଥା ନିର୍ବାଚନ ସମ୍ବନ୍ଧରେ ଶିଖିବେ ।

**ସୂଚନା**

- ସଂଳାପ ମାଧ୍ୟମରେ ନିଜ ଗ୍ରାମ ପଞ୍ଚାୟତ ସମ୍ବନ୍ଧୀୟ ସମସ୍ତ ତଥ୍ୟ ପାଠ ବହିରେ ଦିଆଯାଇଛି ସେଥିପ୍ରତି ଦୃଷ୍ଟି ଦିଅନ୍ତୁ ।
- ସରପଞ୍ଚ ନିର୍ବାଚନ ଓ ପଞ୍ଚାୟତ ସମିତି ନିର୍ବାଚନ ସମ୍ବନ୍ଧରେ ପିଲାମାନଙ୍କୁ ଧାରଣା ଦିଅନ୍ତୁ ।

**ପ୍ରସ୍ତୁତି** ଶ୍ରେଣୀରେ ମନିଟର ନିର୍ବାଚନ କରାଯିବ । ପ୍ରଧାନମନ୍ତ୍ରୀ, ବଗିଚା ମନ୍ତ୍ରୀ, ସଫେଇ ମନ୍ତ୍ରୀ ପ୍ରଭୃତିଙ୍କୁ ମିଶାଇ ସରକାର ଗଠନ କରାଯିବ ।

**କିଏ କ'ଣ କରିପାରିବ**

| ପିଲାମାନଙ୍କୁ ଗୋଲେଇ କରି ଠିଆ କରାଇବେ । ପ୍ରତ୍ୟେକଙ୍କୁ କିଛି ଟଙ୍କା ଦିଆଯିବ । ସେହି ଟଙ୍କାରେ ପିଲାମାନେ ନିଜ ଗ୍ରାମର କେଉଁ କେଉଁ ଉନ୍ନତି କରିପାରିବେ କହିବେ । ଶିକ୍ଷକ ତାହାକୁ କଳାପଟାରେ ଲେଖିବେ । |
|---|
| ପିଲାମାନଙ୍କୁ ଗୋଲେଇ କରି ବସାଇବେ । ନିଜ ଗ୍ରାମରେ ରାସ୍ତା, ବନ୍ଧ, ପ୍ରାଥମିକ ବିଦ୍ୟାଳୟ, ପଞ୍ଚାୟତ କାର୍ଯ୍ୟାଳୟ ଇତ୍ୟାଦି କେଉଁମାନେ ତଦାରଖ କରନ୍ତି ଆଲୋଚନା କରାଇବେ । |

- ସଂଳାପ ମାଧ୍ୟମରେ ଗ୍ରାମ ପଞ୍ଚାୟତର ସମସ୍ତ ସଦସ୍ୟଙ୍କ ସମ୍ବନ୍ଧରେ ବର୍ଣ୍ଣନା କରନ୍ତୁ । ଯଥା- ୱାର୍ଡ଼ ମେମ୍ବର, ନାଏବ୍ ସରପଞ୍ଚ, ସରପଞ୍ଚ ଇତ୍ୟାଦି ।
- ପଞ୍ଚାୟତ ସମିତି କିପରି ଗଠନ ହୁଏ ଓ ଏହାର କାର୍ଯ୍ୟ ବିଷୟରେ ସଂଳାପ ମାଧ୍ୟମରେ ପିଲାମାନଙ୍କୁ ବୁଝାନ୍ତୁ ।
- ସହରାଞ୍ଚଳରେ ପୌର ପରିଷଦର ଗଠନ,କାର୍ଯ୍ୟ ଓ ନିର୍ବାଚନ ବିଷୟରେ ବିଷଦ ଭାବରେ କହିବେ । ଗ୍ରାମାଞ୍ଚଳ ସ୍ଥଳେ ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତ ସମିତି ବିଷୟରେ ଗୁରୁତ୍ୱ ଦେବେ ।
- ବିନ୍ଦୁ ଖେଳର ଶିକ୍ଷଣ କାର୍ଯ୍ୟ ପାଇଁ ଚାରୋଟି ସେଟ୍ (ଡ୍ରଇଂ ସିଟ୍) ପ୍ରସ୍ତୁତ କରିବେ ।

**ଆମେ ଜାଣିବା**

- ପଞ୍ଚାୟତ ସମିତି କାର୍ଯ୍ୟାଳୟରେ ବୃଷ୍ଟି ପରିମାପକ ଯନ୍ତ୍ରର ବ୍ୟବହାର, ବାର୍ଦ୍ଧକ୍ୟ ଓ ଅକର୍ମଣ୍ୟ ଭତ୍ତା ପ୍ରଦାନ, ପାଣି ପଞ୍ଚାୟତ, ଜଳଛାୟା ପ୍ରଭୃତି ରହିଛି ।
- ପଞ୍ଚାୟତ ରାଜର ନିୟମାବଳୀ ସଂଗ୍ରହ କରିବେ । ସ୍ୱାୟତ୍ତ ଶାସନ ସମ୍ବନ୍ଧୀୟ ପୁସ୍ତିକା (ଉପର ଶ୍ରେଣୀରେ ଥିବା)ର ସାହାଯ୍ୟ ନେବେ ।

**ଦଳଗତ କାର୍ଯ୍ୟ**

ଦଳଗତ ଭାବେ ପିଲାମାନେ ନିକଟସ୍ଥ ପଞ୍ଚାୟତ ଅଫିସ୍‌ର ସରପଞ୍ଚ ବା ୱାର୍ଡ ମେମ୍ବରଙ୍କୁ ସାକ୍ଷାତ କରି ଆଲୋଚନା କରିବେ ।

**ପ୍ରକଳ୍ପ**

- ଗ୍ରାମପଞ୍ଚାୟତ ଅଫିସ୍‌କୁ ଯାଇ ସେଠାରେ କ'ଣ କ'ଣ ଅଛି ଦେଖ ଓ ସେଠାରେ କି କି କାର୍ଯ୍ୟ ହେଉଛି ତାହାର ଏକ ବିବରଣୀ ପ୍ରସ୍ତୁତ କର ।



Digitized by PPRACHIN, SOA

## ପିଲାଙ୍କ ପାଇଁ କାମ

- ବିଭିନ୍ନ ଅନୁଷ୍ଠାନ, ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତସମିତିର କାର୍ଯ୍ୟଗୁଡ଼ିକୁ ଛୋଟ ଛୋଟ କାଗଜ ଖଣ୍ଡଗୁଡ଼ିକରେ ଲେଖାଯାଇଥିବ । ଯଥା- ଗ୍ରାମ୍ୟ ରାସ୍ତା ମରାମତି, ବିଦ୍ୟାଳୟ ଗୃହ ନିର୍ମାଣ, ବୃକ୍ଷରୋପଣ, ଲୋକଙ୍କୁ ଋଣ ଦେବା, ପୋଖରୀ, ହାଟ ନିଲାମ୍, କେନାଲ ଖୋଳା ଇତ୍ୟାଦି । ସେଗୁଡ଼ିକ ମଧ୍ୟରୁ କେଉଁଗୁଡ଼ିକ ଗ୍ରାମ ପଞ୍ଚାୟତର ଓ କେଉଁ ଗୁଡ଼ିକ ପଞ୍ଚାୟତ ସମିତିର ତାହାକୁ ଅଲଗା ଅଲଗା କରିବେ ।
- ପିଲାମାନଙ୍କୁ ଦଳରେ ବସାଇ ପ୍ରତି ଦଳ ପାଠ ବହିରେ ଥିବା ପଞ୍ଚାୟତ ସମିତି କାର୍ଯ୍ୟାଳୟର ଚିତ୍ର ଦେଖି ଦୁଇ ଧାଡ଼ି ଲେଖାଏଁ କହିବେ ।
- ବିନ୍ଦୁ ଖେଳ ମାଧ୍ୟମରେ କେତେକ ଶବ୍ଦ ଦିଆଯାଇଥିବ । ସେମାନେ କାହା ଦ୍ୱାରା ନିର୍ବାଚିତ ହୁଅନ୍ତି ଯେଉଁମାନେ ସେହି ଘର ଦଖଲ କରିବେ ସେମାନେ କହିବେ ।

| | | |
|---|---|---|
| .କାଉନ୍‌ସିଲର | .ଚେୟାର ମ୍ୟାନ୍ ପୌର ପରିଷଦ | .ଭାଇସ୍ ଚେୟାରମ୍ୟାନ୍ ପୌର ପରିଷଦ |
| .ସରପଞ୍ଚ | .ୱାର୍ଡ଼ମେମ୍ବର | .ଭାଇସ୍ ଚେୟାରମ୍ୟାନ ପଞ୍ଚାୟତ ସମିତି |
| .ନାଏବ୍ ସରପଞ୍ଚ | .ପଞ୍ଚାୟତ ସମିତି ଚେୟାରମ୍ୟାନ୍ | .ପଞ୍ଚାୟତ ସମିତି ସଭ୍ୟ |

**ଅଭ୍ୟାସ** ପୁସ୍ତକରେ ଦିଆଯାଇଥିବା ଅଭ୍ୟାସକୁ ଶିକ୍ଷକ ପିଲାମାନଙ୍କ ଦ୍ୱାରା କରାଇବେ ।

**ଉପକରଣ** ଡ୍ରଇଂ ସିଟ୍, ବିନ୍ଦୁ ଖେଳ ପାଇଁ ବିନ୍ଦୁ, ଛୋଟ ଛୋଟ କାଗଜ, ଛବି ।

## ବିଷୟ ବୁଝି ଲେଖ

| | |
|---|---|
| ତୁମ ଗାଁର ନାମ | ________ |
| ଡାକ ଘର | ________ |
| ଜିଲ୍ଲା | ________ |
| ଗ୍ରାମ ପଞ୍ଚାୟତ | ________ |
| ପଞ୍ଚାୟତ ସମିତି | ________ |
| ନିକଟସ୍ଥ ବ୍ୟାଙ୍କ | ________ |
| ଥାନା | ________ |
| ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ର | ________ |

କିଏ କେଉଁ ସ୍ତରର କର୍ମଚାରୀ




## ଦ୍ୱିତୀୟ ଏକକ ପରୀକ୍ଷଣ



Digitized by PPRACHIN, SOA

# ଅଜାଙ୍କ ବିଚାର ବଦଳିଲା

**ସମୟ - ୧୦ ପିରିୟଡ୍**

ଶ୍ୟାମ ପ୍ରଧାନଙ୍କ ନାତି ବି.ଏ.ପାଶ୍ କରିଛି । ଚାକିରି ନାହିଁ । କଟକ ଯାଇ ବ୍ୟବସାୟ କରିବ । ଅଜାଙ୍କୁ ମାଗିଛି କୋଡ଼ିଏ ହଜାର ଟଙ୍କା । ଅଜାଙ୍କ ଭରସା ମହାଜନ ଅଭି ସାହୁ । ଅଜା ଜାଣିଛନ୍ତି ସେ ଭାରି ଦୟାଳୁ । କିନ୍ତୁ ତା' ପାଖରେ ଟଙ୍କା ନାହିଁ । କଥା ଦେଇଛି, ସେ ନିଜେ ବ୍ୟାଙ୍କରୁ କରଜ କରି ଆଣିବ ଓ ଜମି ବନ୍ଧକ ରଖି ବୁଢ଼ାକୁ ରଣ ଦେବ । ବ୍ୟାଙ୍କ୍ ରଣ କ'ଣ ? ଅଜାଙ୍କ ମନରେ ସନ୍ଦେହ ।





ଅଜା ଯାଇ ମଙ୍ଗୁଳୁକୁ ପଚାରିଲେ, ବ୍ୟାଙ୍କର କାମ କ'ଣ ? ମଙ୍ଗୁଳୁ ବ୍ୟାଙ୍କରେ କାମ କରେ । ସେ କହିଲା,"ବ୍ୟାଙ୍କରେ ଟଙ୍କା, ସୁନା, ଗହଣା ରଖିବା ନିରାପଦ । କୃଷି, ବ୍ୟବସାୟ, ଘର ତିଆରି ଓ ବିଭିନ୍ନ ଧନ୍ଦା କରିବା ପାଇଁ ବ୍ୟାଙ୍କ ରଣ ଦିଏ ଓ କମ୍ ସୁଧ ନିଏ । ଆଉ ଅଭି ସାହୁ ବ୍ୟାଙ୍କରୁ କମ୍ ସୁଧରେ ରଣ ନିଏ ଓ ଗାଁ ଲୋକଙ୍କୁ କରଜ ଦେଇ ଅଧିକ ସୁଧ ପାଏ ।"

ଅଜା ମଙ୍ଗୁଳୁର କଥା ଏଣେ ଶୁଣୁଥାନ୍ତି । ମନେମନେ ମହାଜନର ଚତୁରତା ବିଷୟ ଚିନ୍ତା କରୁଥାନ୍ତି ।ଆଚ୍ଛା! ମଙ୍ଗୁଳୁ, ବ୍ୟାଙ୍କରୁ ମତେ ରଣ ମିଳି ପାରିବ ନାଁ ? ''ନିଶ୍ଚୟ ମିଳିବ । ଆପଣ ମ୍ୟାନେଜରଙ୍କୁ ସାକ୍ଷାତ କରନ୍ତୁ ।'' ପରଦିନ ନାତିକୁ ସାଙ୍ଗରେ ନେଇ ଅଜା ବ୍ୟାଙ୍କରେ ହାଜର ।



ଅଜା ମ୍ୟାନେଜରଙ୍କୁ ପଚାରି ବୁଝିଲେ, ତାଙ୍କ ନାତିକୁ ବ୍ୟାଙ୍କ୍ କି ପ୍ରକାର ସାହାଯ୍ୟ କରିପାରିବ । ବ୍ୟାଙ୍କରୁ ରଣ ନେଇ ଗୋପାଳନ କେନ୍ଦ୍ର ବା ପଶୁ ପାଳନ କେନ୍ଦ୍ର ଖୋଲିବା ପାଇଁ ମ୍ୟାନେଜର ପରାମର୍ଶ ଦେଲେ । ସଙ୍ଗେ ସଙ୍ଗେ ମ୍ୟାନେଜର ଅଜା ଓ ନାତିକୁ ରଣ ମଂଜୁର କରିଦେଲେ । ନିଜ ଗାଁରେ ଆରମ୍ଭ ହେଲା ଗୋପାଳନ ଓ କୁକୁଡ଼ା ପାଳନ କେନ୍ଦ୍ର ।



ଦିନେ ରଣଜିତ ଦେଖିଯାଇଥିଲା - ଗୋପାଳନ କେନ୍ଦ୍ରକୁ । ବ୍ୟାଙ୍କ ରଣ ବିଷୟ ଶୁଣି ପଚାରିଲା, ''ଆଚ୍ଛା ଅଜା ! ତମେ ଯଦି ଟଙ୍କା ପରିଶୋଧ ନକରିବ, ବ୍ୟାଙ୍କ୍ କ'ଣ କରିବ ?'' ''ଆରେ ପାଗଳ, ବ୍ୟାଙ୍କ କ'ଣ ଛାଡ଼ିବ ? ତହସିଲ୍‌ଦାର, ଉପଜିଲ୍ଲାପାଳ, ତାଙ୍କ ଉପରେ ଜିଲ୍ଲାପାଳ ଅଛନ୍ତି । ତାଙ୍କ ନିକଟରେ ଅଭିଯୋଗ କରି ଟଙ୍କା ଆଦାୟ କରିନେବ । ଆହୁରି ଅଛି ଜିଲ୍ଲାକୋର୍ଟ, ତା ଉପରକୁ ହାଇକୋର୍ଟ । କିନ୍ତୁ ସେ କଥା ଉଠିଲା କେଉଁଠି ? ମୋ ନାତି ତ ଠିକ୍ ସମୟରେ ରଣ କିସ୍ତି ପରିଶୋଧ କରି ଆସୁଛି ?''

ତା' ପରେ ଅଜା ଆଉ ମହାଜନ ପିଣ୍ଡା ଚଢ଼ି ନାହାଁନ୍ତି କି ନାତି ଆଉ ଚାକିରି ଖୋଜି ବୁଲି ନାହିଁ ।





Digitized by PPRACHIN, SOA

■ ଚିତ୍ରଟିକୁ ଦେଖି ବ୍ୟାଙ୍କର କର୍ମଚାରୀଙ୍କୁ ଚିହ୍ନ ।






■ ଚିତ୍ରଟିକୁ ଦେଖି ଅଦାଲତ ବିଷୟରେ ଅନୁମାନ କର ଓ ଲୋକମାନେ କିଏ, ସେମାନଙ୍କର ତାଲିକା କର ।



■ ଯେଉଁମାନଙ୍କୁ ଅଦାଲତ ଚିତ୍ରରେ ଦେଖୁଛ ସେମାନଙ୍କର କାମ ଲେଖ ।



Digitized by PPRACHIN, SOA

ଆସ ଜାଣିବା ।




ପ୍ରତି ରାଜ୍ୟର ଏକ ଉଚ୍ଚ ନ୍ୟାୟାଳୟ ବା ଅଦାଲତ ରହିଛି । ଏହାକୁ ହାଇକୋର୍ଟ କୁହାଯାଏ । ଏହାର ମୁଖ୍ୟ ବିଚାରପତିଙ୍କୁ ସାହାଯ୍ୟ କରିବା ପାଇଁ ଅନ୍ୟ ବିଚାରପତି ଓ କର୍ମଚାରୀ ଥାଆନ୍ତି ।




ପ୍ରତି ଜିଲ୍ଲା ଶାସନ କାର୍ଯ୍ୟ ପାଇଁ ଜିଲ୍ଲାପାଳ ଓ ସବ୍‌ଡ଼ିଭିଜନ୍ ସ୍ତରରେ ଉପ ଜିଲ୍ଲାପାଳ ଥାଆନ୍ତି । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅନେକ କର୍ମଚାରୀ ଥାଆନ୍ତି ।




## ଅଭ୍ୟାସ

ଏହି କାମଗୁଡ଼ିକ କାହାର, ମିଳାଅ ।

୧. ଟଙ୍କା ପଇସା ଦେବା ନେବା — ନିରାପତ୍ତା କର୍ମଚାରୀ
ବ୍ୟାଙ୍କର ହିସାବ ରଖିବା — ମ୍ୟାନେଜର
ଗ୍ରାହକଙ୍କ ସୁବିଧା ଅସୁବିଧା ବୁଝିବା — କ୍ୟାସିୟର
ବ୍ୟାଙ୍କର ନିରାପତ୍ତା ରଖିବା — ହିସାବ ରକ୍ଷକ

୨. ତୁମେ ବ୍ୟାଙ୍କରୁ ଟଙ୍କା ଉଠାଇବାକୁ ଚାହୁଁଛ । ସେଥିପାଇଁ ତୁମକୁ କ'ଣ କରିବାକୁ ପଡ଼ିବ, ଲେଖ ।

___

___

___

୩. ବ୍ୟାଙ୍କ କେଉଁ କେଉଁ କାର୍ଯ୍ୟ ପାଇଁ ଋଣ ଦେଇଥାଏ ?

___

___

___

___



Digitized by PPRACHIN, SOA

୪. କାହା ପାଖକୁ ଯିବା ?

ଋଣ ଆଣିବା ପାଇଁ

ଖଜଣା ପୈଠ କରିବା ପାଇଁ

ଜାତି, ବାସିନ୍ଦା ଓ ଆୟର ପ୍ରମାଣ ପତ୍ର ପାଇଁ

ଫୌଜଦାରୀ ମୋକଦ୍ଦମା ଦାଏର କରିବା ପାଇଁ

ନିଜ ଜମିରେ କେହି ଘର କରିଲେ

୫. କିଏ ମୁଖ୍ୟ ?

ଜିଲାର →

ହାଇକୋର୍ଟର →

ସବ୍‌ଡିଭିଜନ୍‌ର →

ତହସିଲ୍‌ର →

୬. ଠିକ୍ ଉତ୍ତର ଚାରିପଟେ ଗୋଲ୍ ବୁଲାଅ ।

ନିରାପତ୍ତା କର୍ମଚାରୀ

ହିସାବରକ୍ଷକ | ବ୍ୟାଙ୍କ୍‌ର ମୁଖ୍ୟ | କ୍ୟାସିୟର୍

ମ୍ୟାନେଜର

**ତୁମ ପାଇଁ କାମ :**

୧. ଋଣ ନେବା ପାଇଁ ବ୍ୟାଙ୍କରେ କେଉଁ କେଉଁ ନିୟମ ରହିଛି, ସେଗୁଡ଼ିକୁ ସଂଗ୍ରହ କରି ଲେଖ ।

୨. ତୁମ ଗ୍ରାମରେ ଲୋକେ ଋଣ ଆଣି କି କି କାମ କରିଛନ୍ତି ତା'ର ଏକ ତାଲିକା କର । (ଯେ କୌଣସି ଦୁଇ ଜଣଙ୍କର)

୩. ଶିକ୍ଷକଙ୍କ ସାଥିରେ ଅଦାଲତ ଭିତରକୁ ଯାଅ ଓ ସେଠାରେ କ'ଣ ହେଉଛି ତା'ର ଏକ ତାଲିକା କର ।



Digitized by PPRACHIN, SOA

## କ'ଣ ଶିଖିବେ

ବ୍ୟାଙ୍କ୍ ଓ ଅଦାଲତର କାର୍ଯ୍ୟ, ଉପଜିଲାପାଳ, ଜିଲାପାଳଙ୍କ ଭୂମିକା ସମ୍ପର୍କରେ ଜାଣିବେ ।

## ସୂଚନା

ଗପ ମାଧ୍ୟମରେ ବ୍ୟାଙ୍କର କାର୍ଯ୍ୟ ତଥା ଭୂମିକା ବିଷୟରେ ବର୍ଣ୍ଣନା କରାଯାଇଛି । ଅଦାଲତ, ଉପଜିଲାପାଳ ଓ ଜିଲାପାଳଙ୍କ କାର୍ଯ୍ୟାଳୟ ଦ୍ୱାରା ଜନସାଧାରଣ ପାଉଥିବା ବିଭିନ୍ନ ଉପକାର ସମ୍ବନ୍ଧରେ ପାଠ ବହିରେ ଚିତ୍ର ଓ ଶିକ୍ଷଣ କାର୍ଯ୍ୟକ୍ରମ ମାଧ୍ୟମରେ ଦିଆଯାଇଛି ।

## ପ୍ରସ୍ତୁତି

- ବ୍ୟାଙ୍କରେ ବ୍ୟବହାର କରାଯାଉଥିବା ଟଙ୍କା ଉଠାଣ ଓ ଜମା ଫର୍ମ (ଓଡ଼ିଆ ଭାଷାରେ ଲେଖାଥିବା) ଆଣି ତାହା କିପରି ପୂରଣ କରାଯିବ ପିଲାମାନଙ୍କ ଦ୍ୱାରା କରାନ୍ତୁ ।
- ପିଲାମାନେ ପାଠଟିକୁ ପଢ଼ିବେ । ବ୍ୟାଙ୍କ୍, ଅଦାଲତ, ଜିଲ୍ଲାପାଳ, ଉପଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ କାର୍ଯ୍ୟରତ ବିଶିଷ୍ଟ କର୍ମଚାରୀ ଓ ଉକ୍ତ ଅନୁଷ୍ଠାନଗୁଡ଼ିକ ଦ୍ୱାରା ଲୋକମାନେ ପାଉଥିବା ବିଭିନ୍ନ ସେବା ଓ ଉପକାରକୁ ଶିକ୍ଷକ ପିଲାମାନଙ୍କୁ ଆଲୋଚନା ମାଧ୍ୟମରେ ବୁଝାଇବେ ।

## ଚିତ୍ର ଦେଖି କହିବା

- ପାଠ ବହିରେ ଦିଆଯାଇଥିବା ବ୍ୟାଙ୍କର ଛବି ଦେଖି ତା ସମ୍ପର୍କରେ ପିଲାମାନେ ୨ ଧାଡ଼ି ଲେଖାଏଁ କହିବେ ।
- ଅଦାଲତର କାର୍ଯ୍ୟ ଚିତ୍ରଟିକୁ ଦେଖି ୨ ଦଳ ପିଲା ଅଦାଲତର କାମଗୁଡ଼ିକ ବିଷୟରେ ଆଲୋଚନା କରିବେ ।

## ଆମେ ଜାଣିବା

- ଗ୍ରାମାଞ୍ଚଳରେ ଗ୍ରାମ୍ୟବ୍ୟାଙ୍କ, ସମବାୟ ବ୍ୟାଙ୍କ, ମିନିବ୍ୟାଙ୍କ ପ୍ରଭୃତି ରହିଛି । ସହରାଞ୍ଚଳରେ ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ ଓ ବିଭିନ୍ନ ଜାତୀୟକରଣ ବ୍ୟାଙ୍କ; ମହିଳା ବ୍ୟାଙ୍କ, ଅର୍ବାନ୍ କୋଅପରେଟିଭ୍ ବ୍ୟାଙ୍କ୍ ରହିଛି । ସେହିପରି ରାଜ୍ୟ ସ୍ତରରେ ରିଜର୍ଭ ବ୍ୟାଙ୍କ୍, ନାବାର୍ଡ ପ୍ରଭୃତି ରହିଛି । କେତେକ ବ୍ୟାଙ୍କ୍ ସେମାନଙ୍କର ପୁଞ୍ଜି ବିଭିନ୍ନ ଶିଳ୍ପ ସଂସ୍ଥାରେ ବିନିଯୋଗ କରନ୍ତି ଓ ଆଉ କେତେକ ବ୍ୟାଙ୍କ ଦେଶର କୃଷି ଓ ଗ୍ରାମାଞ୍ଚଳର ଉନ୍ନତି ପାଇଁ ବିଭିନ୍ନ କାମ ହାତକୁ ନିଅନ୍ତି । ଯଥା ନାବାର୍ଡ , ଆଇ.ଡ଼ି. ବି. ଆଇ. ଇତ୍ୟାଦି । ଲୋକ ଅଦାଲତ ମାଧ୍ୟମରେ ପୁରୁଣା ମୋକଦ୍ଦମାଗୁଡ଼ିକୁ ଫଏସଲା କରିବା, ଘଟଣା ଓ ଆବଶ୍ୟକ ଅନୁଯାୟୀ ବିଭିନ୍ନ ସ୍ତରର ଅଦାଲତରେ ମୋକଦ୍ଦମା ବିଚାର କରାଯାଇଛି । ମୋଟର ଦୁର୍ଘଟଣା ଅଦାଲତରେ କେବଳ ମୋଟର ଦୁର୍ଘଟଣା ସମ୍ପର୍କିତ ମୋକଦ୍ଦମାର ବିଚାର କରାଯାଏ ।
- ସବ୍‌କଲେକ୍ଟରଙ୍କ ଅଫିସ୍‌ରେ ଜଣେ ସେଭିଙ୍ଗସ୍ ଅର୍ଗାନାଇଜର ରହନ୍ତି । ବିଦ୍ୟାଳୟରେ ପିଲାଙ୍କ ଦ୍ୱାରା ସଞ୍ଚୟିକା ବ୍ୟାଙ୍କ୍ ପରିଚାଳନା କରିବା ପାଇଁ ଆବଶ୍ୟକ ତଥ୍ୟ ସଂଗ୍ରହ କରିପାରିବେ ।

## ଦଳଗତ କାର୍ଯ୍ୟ

- ପିଲାମାନେ ୨ ଦଳରେ ଭାଗ ହେବେ । ଗୋଟିଏ ଦଳ ଫ୍ଲାସ୍‌କାର୍ଡ଼ଟିଏ ଦେଖାଇଲେ ଅନ୍ୟ ଦଳ ସେଥିରେ ଲେଖିଥିବା ଜିଲାସ୍ତରୀୟ ଶାସନକର୍ତ୍ତାଙ୍କ ବିଷୟରେ କହିବେ । ଏହିଭଳି ଦ୍ୱିତୀୟ ଦଳ କାର୍ଡ଼ ଦେଖାଇବେ ଓ ପ୍ରଥମ ଦଳ କହିବେ ।

## ପ୍ରକଳ୍ପ

- ପିଲାମାନେ ବ୍ୟାଙ୍କ, ଅଦାଲତ, ଉପଜିଲାପାଳ, ଜିଲାପାଳଙ୍କ କାର୍ଯ୍ୟାଳୟ ସମ୍ପର୍କରେ ବିଭିନ୍ନ ବ୍ୟକ୍ତିଙ୍କ ଠାରୁ ପଚାରି ବୁଝିବେ ଓ ସେଠାରେ ହେଉଥିବା କାର୍ଯ୍ୟଗୁଡ଼ିକର ତାଲିକା କରିବେ ।

**ଉପକରଣ** ବ୍ୟାଙ୍କର ଚିତ୍ର, ବିଜିନେସ୍ ଖେଳର ବୋର୍ଡ଼, ଗୋଟି ଇତ୍ୟାଦି ।



Digitized by PPRACHIN, SOA

# ଆମ ଚାରିପଟେ ଥିବା ଜିନିଷ

ସମୟ - ୧୨ ପିରିୟଡ୍



ଖୁସିରେ ପିଲେ, କରିଲେ ଭୋଜି
ମାରିଲେ ମିଶି ତାଳି
ଦେଖିଲେ ବଣ, ଝରଣା, ନଈ
ଖାଇଲେ ବୁଲି କୋଳି ।
ଖେଳିଲେ ଖେଳ, ଲତା ଗହଳେ
ଜୀବଜନ୍ତୁଙ୍କ ମେଳେ
ତୋଳିଲେ ଘର, ଯୋଡ଼ି ପଥର
ନିଜର ବୁଦ୍ଧି ବଳେ ।

ପିଲେ, ତୁମେ ତ ବଣଭୋଜି କରିଥିବ । ଏଇଠି ଦେଖ ପିଲାଙ୍କର ବଣଭୋଜିର ଚିତ୍ରଟିଏ । ଏଥିରେ କ'ଣ ଜିନିଷ ଅଛି ଭଲକରି ଦେଖି ,ତା'ର ତାଲିକା କର ।

________ ________ ________

________ ________ ________

________ ________ ________

ଉପର ତାଲିକାରେ ଥିବା କେତେକ ଜିନିଷ ମଣିଷ ଗଢ଼ିଛି । ସେଗୁଡ଼ିକ ଚାରିପଟେ ଗୋଲ୍ ବୁଲାଅ । ଏମାନଙ୍କ ମଧ୍ୟରୁ କେତେକ ହାତ ତିଆରି ଓ ଅନ୍ୟଗୁଡ଼ିକ କଳକାରଖାନାରେ ତିଆରି । ଚିହ୍ନାଇ ପାରିବ କି ? ତାଲିକାରେ ଗୋଲ୍ ବୁଲାଅ ।

ଆମେ ଜାଣିଲେ, ଆମ ଚାରିପଟେ ଆମେ ଯେଉଁସବୁ ଜିନିଷ ଦେଖୁଛୁ ସେଗୁଡ଼ିକ ମଧ୍ୟରୁ କେତେକ ମନୁଷ୍ୟକୃତ ଓ ଅନ୍ୟଗୁଡ଼ିକ ପ୍ରାକୃତିକ । ପ୍ରାକୃତିକ ପଦାର୍ଥକୁ ନେଇ ମଣିଷ ନିଜର ବ୍ୟବହାର ଉପଯୋଗୀ ଅନେକ ବସ୍ତୁ ତିଆରି କରିଥାଏ ।

ଏଗୁଡ଼ିକୁ ଆମେ କ'ଣ କହିବା ? ହାତ ତିଆରି ଓ କଳକାରଖାନା ତିଆରି → ________

ଅନ୍ୟଗୁଡ଼ିକୁ କ'ଣ କହିବା ? → ________

ଚିତ୍ରରେ କିଏ କେଉଁଥିରୁ ତିଆରି ?



ଆଉ କ'ଣ କ'ଣ ତିଆରି ହୋଇଥାଏ?

କାଠରୁ ________

ଲୁହାରୁ ________

ମାଟିରୁ ________

ସୁନାରୁ ________

ତୁମ ଗାଁରେ ଯେଉଁ ଲୋକ
କାଠରୁ ଚୌକି ଗଢ଼େ, ସେ ________
ଯିଏ ଲୁହାରୁ ଦାଆ ତିଆରି କରେ, ସେ ________
ଯିଏ ସୁନାରୁ ମୁଦି ତିଆରି କରେ, ସେ ________
ଯିଏ ମାଟିରୁ ହାଣ୍ଡି ଗଢ଼େ, ସେ ________



Digitized by PPRACHIN, SOA

# ବୃତ୍ତି ଏ ମୋ ପୋଷେ କୁଟୁମ୍ବ

ସମୟ - ୧୪ ପିରିୟଡ୍



■ ଲୋକମାନେ କେଉଁ କେଉଁ କାମ କରନ୍ତି ? ଚିତ୍ର ଦେଖି କହ ଓ ଲେଖ ।

________________________________

________________________________

■ କିଛି କାମ ତୁମ ଅଞ୍ଚଳର ଲୋକେ କରନ୍ତି, କିନ୍ତୁ ଏହି ଚିତ୍ରରେ ସେସବୁ ନାହିଁ । ସେଗୁଡ଼ିକୁ ଲେଖ ।

________________________________

■ କିଛି କାମ ଏହି ଚିତ୍ରରେ ଅଛି; କିନ୍ତୁ ତୁମ ଗାଁ ଲୋକେ କରନ୍ତି ନାହିଁ । ସେଗୁଡ଼ିକୁ ବାଛି ଲେଖ ।

__________ __________ __________

> ଲୋକମାନେ ବିଭିନ୍ନ କାର୍ଯ୍ୟକରି ପରିବାର ଚଳାନ୍ତି । ଏଗୁଡ଼ିକ ସେମାନଙ୍କର ଜୀବିକା ବା ବୃତ୍ତି ଅଟେ । ଆଗରୁ ପୁରୁଷାନୁକ୍ରମେ ବିଭିନ୍ନ ପରିବାରର ଲୋକେ ଭିନ୍ନ ଭିନ୍ନ କାମକୁ ସେମାନଙ୍କର ଜୀବିକା ରୂପେ ଗ୍ରହଣ କରି ଆସୁଥିଲେ । ଆଜିକାଲି କୌଣସି ପରିବାର ବା ଲୋକଙ୍କୁ ଯେ କୌଣସି ବୃତ୍ତି କରିବା ପାଇଁ ମନା ନାହିଁ ।

■ ତୁମ ବାପା କେଉଁ କାମ କରି ପରିବାର ଚଳାନ୍ତି, ପଚାରି ବୁଝ ଓ ଲେଖ ।

________________________________

________________________________

<u>ଟିକିଏ ଚିନ୍ତା କର ।</u>

■ ତୁମ ଗାଁରେ ଯଦି ମୁଣ୍ଡର ବାଳ କାଟିବା ପାଇଁ କେହି ନାହାନ୍ତି, ତେବେ ତୁମେ କ'ଣ କରିବ ?

________________________________

________________________________

■

| | | | | | |
|---|---|---|---|---|---|
| ଅ | ଖ | ଡ଼ | ଟା | ବ | ଶ |
| ହା | ଜା | ଲ, | ଙ୍ଗି | ନି | ତୁ |
| ଗ | ଟ | ଙ୍ଗ | ଆ | ଶି | ଡ଼ି |
| ଙ୍ଗା | ଳ | ଚ | ସ୍ତ୍ରୀ | ମି | ଙ୍କ |
| ସା | ଫ | କ | ଇ | ଅୁଁ | ଣ୍ଡି |

■ ଉପର ଅକ୍ଷର ଟେବୁଲରେ ବିଭିନ୍ନ ଜୀବିକା ସମ୍ପର୍କୀୟ ବସ୍ତୁ ଲୁଚି ରହିଛି । ଖୋଜି ବାହାର କର ।

ଯଥା- ହାତୁଡ଼ି, କମାର, ବଢ଼େଇ

__________ __________ __________

__________ __________ __________

__________ __________ __________

■ ଏହି ବସ୍ତୁ/ବ୍ୟକ୍ତି/କାମ କେଉଁ ବୃତ୍ତି ସହିତ ସଂପୃକ୍ତ ?

________________________________

________________________________



Digitized by PPRACHIN, SOA

## ବୃତ୍ତି



ହାତରେ ଜାଲ କାଖେ ଖାଲେଇ
ନଈ ପୋଖରୀ କୂଳେ,
ପାଣିରୁ ଧରି ଆଣିଲେ ମାଛ
କୁଟୁମ୍ବ ମୋର ଚଳେ ।



ବରଷା, ଖରା, ଶୀତ, କାକର
ସହି ଥରକୁ ଥର,
ସରଜି ଦିଏ ଫସଲ ଢେ଼ର
ଏଇ କ୍ଷେତରେ ମୋର ।



ଗାଈ, ମଇଁଷି, ପାଳଇ ମୁହିଁ
ପାଳେ କୁକୁଡ଼ା ଛେଳି,
ଅରଜି ଧନ ସେହି କାମରୁ
କୁଟୁମ୍ବ ନିଏ ପାଳି ।



ବୁଲାଇ ଚକ ଚଲାଇ ହାତ
ମାଟି ପିଣ୍ଡୁଳା ପରେ,
ହାଣ୍ଡି, ପଲମ, ମାଠିଆ, ଘଡ଼ି
ଗଢ଼ଇ ମଉଜରେ ।



ବାଙ୍କ ସଳଖି ବାରିସି ଧାରେ
କରତେ କାଟି କାଠ,
ମେଜ, ଚଉକି, ଲଙ୍ଗଳ କଣ୍ଟି
ଗଢ଼ି ପୋଷଇ ପେଟ ।



ଭାଟିରେ ମୋର ତାତିଲା ଲୁହା
ହାତୁଡ଼ି ମାଡ଼ ଖାଏ,
ଦାଆ, କଟୁରି, କୋଦାଳ, କୋଡ଼ି
ମୁହିଁ ଯୋଗାଇ ଦିଏ ।



ଚଳାଇ ତନ୍ତ, କରି ମିହନ୍ତ
ବୁଣେ କପଡ଼ା ଥାନ,
ଲୁଗା, ଗାମୁଛା, ଶାଢ଼ୀ ଯୋଗାଇ
ମେଣ୍ଟାଏ ଗୁଜୁରାଣ ।

- ତୁମ ସାଙ୍ଗ ପିଲାମାନଙ୍କ ମଧ୍ୟରୁ କାହା ବାପା କ'ଣ କରନ୍ତି, କହ ?
- ତୁମ ଗାଁ ଲୋକେ କେଉଁ କେଉଁ କାମ କରି ପେଟ ପୋଷନ୍ତି ତା'ର ଏକ ତାଲିକା କର ।

---

---




ଆସରେ ପିଲେ ଖେଳିବା ଖେଳ,
ଖେଳି ଖେଳି ଆମେ ଯୋଡ଼ିବା ଘର ।

- ଚିତ୍ର ଦେଖି, କ'ଣ ବୁଝୁଛ ? ଏଗୁଡ଼ିକରୁ କିଏ କ'ଣ ଗଢ଼ନ୍ତି ?



Digitized by PPRACHIN, SOA

## ଅଭ୍ୟାସ

୧.



ଏଗୁଡ଼ିକ ମଧ୍ୟରୁ ଯେଉଁଗୁଡ଼ିକ ମନୁଷ୍ୟକୃତ, ସେଗୁଡ଼ିକୁ ମଣିଷ ଚିତ୍ର ଭିତରେ ଲେଖ ଓ ଯେଉଁଗୁଡ଼ିକ ପ୍ରାକୃତିକ ସେଗୁଡ଼ିକୁ ସୂର୍ଯ୍ୟ ମଧ୍ୟରେ ଲେଖ।





୨. ରଙ୍ଗ ଭର ।







୩. ତୁମ ଅଞ୍ଚଳରେ ଥିବା :

ଜୀବ ______________________

ପ୍ରାକୃତିକ ନିର୍ଜୀବ ______________________

ମନୁଷ୍ୟକୃତ ନିର୍ଜୀବ ______________________

୪. କିଏ କେଉଁଥିରେ ତିଆରି ?

କୋଦାଳ ____________  ଚପଲ ____________

କରତ ____________  ପାଉଁଜି ____________

କଳାପଟା ____________  ବଙ୍କୁଲିବାଡ଼ି ____________

୫. କ'ଣ ତିଆରି ହୁଏ ?




୬. କେଉଁଥିରୁ ମିଳେ ?






Digitized by PPRACHIN, SOA

୭. ଚାଷୀ ଅମଳ କରୁଥିବା ଫସଲର ନାମ ଲେଖ ।

| | | | |
|---|---|---|---|
| | | | |
| | | | |

୮. ଚିତ୍ରଗୁଡ଼ିକୁ ଲକ୍ଷ୍ୟ କର । ଏସବୁ କେଉଁଥିରେ ସିଲେଇ ହୁଏ ?



୯. ତୁମେ ଘରେ କେଉଁ କେଉଁ ପରିବା ଖାଅ, ତା'ର ଏକ ତାଲିକା କର ।

---

୧୦. କେଉଁଠି ରହେ ?



ନଈ, ନାଳ, ପୋଖରୀର ମଧୁର ଜଳରୁ ମାଛ ମିଳେ ।
କିନ୍ତୁ ସମୁଦ୍ର ଓ ହ୍ରଦରୁ ଲୁଣି ମାଛ ମିଳେ ।

୧୧. ଗୃହପାଳିତ ପଶୁପକ୍ଷୀଙ୍କର ଏକ ତାଲିକା କର ।
କିଏ ତୃଣଭୋଜୀ କିଏ ମାଂସଭୋଜୀ ?

ତୃଣ ଭୋଜୀ

ମାଂସ ଭୋଜୀ



ଚିତ୍ର ଦୁଇଟିରେ କ'ଣ ପାର୍ଥକ୍ୟ ଅଛି ଲେଖ ।

---

---

---

---



Digitized by PPRACHIN, SOA

## କ'ଣ ଶିଖିବେ

- ସ୍ଥାନୀୟ ପରିବେଶକୁ ଅନୁଧ୍ୟାନ କରି ସେଗୁଡ଼ିକୁ ପ୍ରାକୃତିକ ଓ ମନୁଷ୍ୟକୃତ ବସ୍ତୁ ଭାବେ ଶ୍ରେଣୀ ବିଭାଗ କରିବେ ।
- ଦୈନନ୍ଦିନ ଜୀବନରେ ବ୍ୟବହାର କରୁଥିବା ଦ୍ରବ୍ୟଗୁଡ଼ିକ ଉତ୍ପାଦନ ସହ ସଂପୃକ୍ତ ବୃତ୍ତିର ତାଲିକା ପ୍ରସ୍ତୁତ କରିବେ ।
- କୃଷକ, ଗୋପାଳକ, ମତ୍ସ୍ୟଜୀବୀ, ପଶୁପାଳକ ଭଳି ଖାଦ୍ୟ ଉତ୍ପାଦନ-କାରୀଙ୍କୁ ଚିହ୍ନଟ କରିବେ ।
- ଉପରୋକ୍ତ ଉତ୍ପାଦନକାରୀଙ୍କ ମୁଖ୍ୟକାର୍ଯ୍ୟ ଓ ଜୀବନଯାପନ ପ୍ରଣାଳୀ ସମ୍ବନ୍ଧରେ ବର୍ଣ୍ଣନା କରିବେ ।

## ସୂଚନା

- ନିଜ ଚତୁଃପାର୍ଶ୍ୱରେ, ପରିବେଶରେ ଅନେକ ପଦାର୍ଥ ଥାଏ । ସେଗୁଡ଼ିକ ମଧ୍ୟରେ କେତେକ ମନୁଷ୍ୟକୃତ ବା କୃତ୍ରିମ, ଆଉ କେତେକ ପ୍ରାକୃତିକ ପଦାର୍ଥ
- ମୂଳ ପଦାର୍ଥରୁ ବିଭିନ୍ନ ବସ୍ତୁ ତିଆରି ହୁଏ ।
- ଗାଁର ଲୋକମାନେ ବୃତ୍ତି ଜରିଆରେ ବିଭିନ୍ନ କୌଶଳ ହାସଲ କରନ୍ତି ଓ ବଂଶାନୁକ୍ରମେ ସେହି ବୃତ୍ତି ଗାଁରେ ପ୍ରଚଳିତ ହୁଏ ।
- ବୃତ୍ତି ପରିବାରର ଭରଣ ପୋଷଣ ସହିତ ସଂପର୍କିତ ।
- ପୁରୁଷାନୁକ୍ରମେ କୌଳିକ ବୃତ୍ତି ପ୍ରଚଳନ ହେଲେ ମଧ୍ୟ, ଜଣେ ଅନ୍ୟ କୌଣସି ବୃତ୍ତିକୁ ନିଜର କରି ଜୀବିକା ନିର୍ବାହ କରିପାରେ ।
- କୌଣସି ବୃତ୍ତି ନ୍ୟୁନ ନୁହେଁ ।
- ସମସ୍ତ ପ୍ରକାର ବୃତ୍ତିକୁ ସମ୍ମାନ ଦେବ ।
- ନିର୍ଦ୍ଦିଷ୍ଟ ବୃତ୍ତିର ସଂପ୍ରଦାୟ ଗାଁରେ ନଥିଲେ ଅନେକ ଅସୁବିଧା ହୁଏ ଏବଂ ସେମାନେ ଥିବା ଯୋଗୁଁ ସମସ୍ତଙ୍କର ସୁବିଧା ହୁଏ ।

**ଆମେ ଜାଣିବା** କୌଣସି ବୃତ୍ତିକୁ ଅସମ୍ମାନ କରିବା ବା ନ୍ୟୁନ ମନେକରିବା ଉଚିତ୍ ନୁହେଁ । ଜାତି, ବୃତ୍ତି ଅନୁସାରେ ନାମକରଣ ନକରି କାଠ କାମ, ହାଣ୍ଡି ଗଢ଼ିବା କାମ, ମାଛ ଧରିବା କାମ, ଗୋପାଳନ କରିବା କାମ ଇତ୍ୟାଦି କହିବେ ।

## ଆସ ଆମେ କାହାର କାମ କ'ଣ ଜାଣିବା

ଶ୍ରେଣୀର ସମସ୍ତ ପିଲାଙ୍କୁ ଦୁଇଦଳ କରିବେ । ବୃତ୍ତିର ଗୀତ ଡ୍ରଇଂ କାଗଜରେ ବଡ଼ ବଡ଼ ଅକ୍ଷରରେ ଲେଖି ପିଲାମାନଙ୍କ ସାମନାରେ ଟଙ୍ଗାଇଦେବେ । ଗୀତରେ ସର୍ବନିମ୍ନ ୫/୭ଟି ବୃତ୍ତିର ଆବୃତ୍ତି ହୋଇଥିବ । ପିଲାମାନେ ବୃତ୍ତି ସମ୍ବନ୍ଧରେ ବୁଝି ପାରୁଥିବେ ।

## ଅଭିନୟ ସଂଗୀତ

> ସକାଳୁ ଉଠି ହଳ ଧରି
> ବିଲକୁ ଯାଏ ଚାଷ କରି
> କହିବ ଦେଖି କିଏ ସେ ? ଇତ୍ୟାଦି

ସେହି କବିତାକୁ ବାରମ୍ବାର ପଢ଼ିବା ପାଇଁ କିଛି ସମୟ ଦିଆ ହେବ ।

ପୂର୍ବରୁ ପ୍ରସ୍ତୁତ- ଦୁଇ ସେଟ୍ (ପ୍ରାୟ ୧୦/୧୨ଟି କାର୍ଡ଼ରେ ବିଭିନ୍ନ ବୃତ୍ତିରେ ଦର୍ଶାଇଲା ଭଳି ଚିତ୍ର) କାର୍ଡ ଉଭୟ ଦଳରେ ସମାନ ସଂଖ୍ୟାର ସମାନ ବୃତ୍ତି ଥିବା ଚିତ୍ର ରହିଥିବ ।

ପ୍ରତି ଦଳ ସେମାନଙ୍କ ଆଗରେ ସେହି ୧୦/୧୨ଟି କାର୍ଡକୁ ରଖିଥିବେ । ଶିକ୍ଷକ ଯେତେବେଳେ ଗୀତର କୌଣସି ପଂକ୍ତି ଗାଇବେ, ଉଭୟ ଦଳ ସେହି ପଂକ୍ତି ସହ ସଂପୃକ୍ତ ବୃତ୍ତିର ଚିତ୍ର ହାତ ଉଠାଇ ଦେଖାଇବେ । ଯେଉଁ ଦଳ ପ୍ରଥମେ ଦେଖାଇବେ ସେ ପଏଣ୍ଟ ପାଇବେ । ଏହିପରି ବିଭିନ୍ନ ପଂକ୍ତି ପଢ଼ି



Digitized by PPRACHIN, SOA

**ପ୍ରସ୍ତୁତି**

☞ ପାଠରେ ପ୍ରଦତ୍ତ ଚିତ୍ରଗୁଡ଼ିକର ଅଧ୍ୟୟନର ଗୁରୁତ୍ୱ ଉପଲବ୍ଧି କରିବେ ଓ ଆବଶ୍ୟକ (ଅଞ୍ଚଳ ଭିତ୍ତିକ ଯାହା ସଂଗ୍ରହ ହୋଇପାରୁଛି) ଉପକରଣ ସଂଗ୍ରହ କରିବେ ।

☞ ସମସ୍ତ ବୃତ୍ତିର ଗୁରୁତ୍ୱ ଓ ଏକ ବିଶେଷତ୍ୱ ରହିଛି ।

**କିଛି କହିବା**

ଘରେ ବାପା, ମା', ଭାଇ, ଭଉଣୀଙ୍କୁ ପିଲାମାନେ କେଉଁ କାମରେ ସାହାଯ୍ୟ କରନ୍ତି ଜଣ ଜଣ କରି କହିବେ ।

**ବୃତ୍ତିଖେଳ**

| ପିଲାମାନଙ୍କୁ ଗୋଲରେ ବସାଇ ଓଗୋଟିଏ କାଗଜ ବଲ୍ ଦିଅନ୍ତୁ । ବଲ୍ ଧରିଥିବା ପିଲାଟି ନିଜ ବାପା ମାଆ କ'ଣ କରନ୍ତି କହିବେ ତା'ପରେ ଯାହା ପାଖକୁ ବଲ୍ ଯିବ ସେ ନିଜ ବାପା/ମାଙ୍କ ଜୀବିକା ବିଷୟରେ କହିବେ । ଏହି ବଲ୍ ଗଡ଼ାଇବା ଖେଳ ମାଧ୍ୟମରେ ସବୁ ପିଲା ନିଜ ପରିବାରର ବୃତ୍ତି ଉପସ୍ଥାପନ କରିବେ । |
|---|

☞ ପାଠର ଚିତ୍ରଗୁଡ଼ିକରେ ଦର୍ଶାଯାଇଥିବା ବିଭିନ୍ନ ବସ୍ତୁ ଓ ପଦାର୍ଥକୁ ସାଧ୍ୟମତେ ସଂଗ୍ରହ କରି ପିଲାମାନଙ୍କୁ ବାସ୍ତବ ଅଭିଜ୍ଞତା ଅର୍ଜନ କରିବାରେ ସକ୍ଷମ କରାଇବେ ।

☞ ପିଲାମାନଙ୍କ ବ୍ୟକ୍ତିଗତ କାର୍ଯ୍ୟ ମାଧ୍ୟମରେ ପ୍ରଶ୍ନାବଳୀର କାର୍ଯ୍ୟପର୍ଦ୍ଦ ପୂରଣ ପାଇଁ ସହଯୋଗ କରିବେ ଓ ଦଳଗତ ଆଲୋଚନା ପାଇଁ ସୁଯୋଗ ଦେବେ ।

**କାମ**

☞ ପିଲାମାନେ ନିଜ ପରିବେଶ, ବିଦ୍ୟାଳୟ ବା ଘରୁ ସଂଗ୍ରହ କରି ଛୋଟ ଛୋଟ ଜିନିଷ ଆଣିବେ ଓ ସେହି ଜିନିଷର ମୂଳ ପଦାର୍ଥଟିକୁ ଚିହ୍ନଟ କରାଇବେ ।

☞ ପାଠରେ ଦିଆଯାଇଥିବା ବୃତ୍ତି ସମ୍ବନ୍ଧୀୟ କବିତାକୁ ଅଭିନୟ କରି ଗାଇବେ ବିଭିନ୍ନ ବୃତ୍ତିର ଚିତ୍ର ସହ ପିଲାଙ୍କୁ ପରିଚିତ କରାଇବେ । ଏହା କିଛି ସମୟ ଅଭ୍ୟାସ କରିବାପରେ ଶିକ୍ଷକ ପୂରା ପଂକ୍ତି ନ କହି ମାତ୍ର ଗୋଟିଏ ଧାଡ଼ି କହି ପିଲାଙ୍କୁ ବୃତ୍ତିର ଚିତ୍ର ଦେଖାଇବା ପାଇଁ କହିବେ ଓ ପିଲା କେତେ ଶୀଘ୍ର ଛବି ଦେଖାଇ ପାରୁଛି ଲକ୍ଷ୍ୟ କରିବେ ।

**ପ୍ରକଳ୍ପ**

☞ ପିଲାମାନେ ନିଜ ଗାଁରେ ବୁଲି ବିଭିନ୍ନ ହସ୍ତକର୍ମ ବା ବୃତ୍ତିରେ ନିୟୋଜିତ ବ୍ୟକ୍ତିମାନଙ୍କର ଏକ ତାଲିକା ପ୍ରସ୍ତୁତ କରନ୍ତୁ ।

☞ ପିଲାମାନେ ଶିକ୍ଷକଙ୍କ ସହ ବଢ଼େଇଶାଳ, କମାରଶାଳ, କୁମ୍ଭାରଶାଳ ପ୍ରଭୃତି ଦେଖି ଆସିବେ । କ'ଣ ଦେଖିଲେ ତା'ର ଏକ ଆଲୋଚନା ହେବ । ତା'ପରେ ପିଲାମାନେ ଲେଖିବେ ।



Digitized by PPRACHIN, SOA

କେଉଁ ପଂକ୍ତି ସହ କେଉଁ ବୃତ୍ତିର ସଂପର୍କ ରହିଛି କହିବେ ।

☞ ନିଜ ଚତୁଃପାର୍ଶ୍ୱରେ ଥିବା ଜିନିଷଗୁଡ଼ିକ ମଧ୍ୟରୁ କେଉଁଟି ମନୁଷ୍ୟକୃତ ଓ କେଉଁଟି ପ୍ରାକୃତିକ ତାହାର ତାଲିକା କରିବେ ।

| | |
|---|---|
| ଉପକରଣ | ଚିତ୍ର (ବିଭିନ୍ନ ବୃତ୍ତିର) କଣ୍ଢା, ଛୋଟ କାଠର ଜିନିଷ, ଛୋଟ ହାଣ୍ଡି, ବିଭିନ୍ନ ଖେଳନା (ପ୍ଲାଷ୍ଟିକର) |

## ତୃତୀୟ ଏକକ ପରୀକ୍ଷଣ



Digitized by PPRACHIN, SOA

## ଜୀବ ଓ ନିର୍ଜୀବ ସମୟ - ୧୨ ପିରିୟଡ୍



କଇଁଛ ପୋଖରୀରେ ପାଣି ପିଇ ଗୁମ୍ଫାରେ ପହଞ୍ଚିବ । ତାକୁ ରାସ୍ତା ଦେଖାଅ ।

### ଅଭ୍ୟାସ

୧. କଇଁଛ ଯିବା ବାଟରେ କ'ଣ କ'ଣ ଦେଖିଲା, ସେଗୁଡ଼ିକର ତାଲିକା କର ।

_______ _______ _______

_______ _______ _______

୨. (କ) ଏମାନଙ୍କ ମଧ୍ୟରୁ କେଉଁମାନେ ଚଳପ୍ରଚଳ ହୁଅନ୍ତି ?

_______ _______ _______

_______ _______ _______

(ଖ) ଆଉ କେଉଁମାନେ ଚଳପ୍ରଚଳ ହୁଅନ୍ତି ? ତାଲିକା କର ।

_______ _______ _______

_______ _______ _______

୩. ଏମାନଙ୍କ ମଧ୍ୟରୁ କେଉଁଗଡ଼ିକ ଚଳପ୍ରଚଳ ହୁଅନ୍ତି, ଆସ ଚିହ୍ନିବା ।



| ନିଜେ ନିଜେ ଚଳପ୍ରଚଳ ହୁଅନ୍ତି | ଅନ୍ୟଦ୍ୱାରା ଚଳପ୍ରଚଳ ହୁଅନ୍ତି |
|---|---|
| | |



୪. ଆଉ କେଉଁମାନେ ଅନ୍ୟଦ୍ୱାରା ଚଳପ୍ରଚଳ ହୁଅନ୍ତି, ତାଲିକା କର ।

_______________________

_______________________



Digitized by PPRACHIN, SOA

୫. ଚିତ୍ରରେ ତୁମେ କ'ଣ ହେଉଥିବା ଲକ୍ଷ୍ୟ କରୁଛ ?



______________________________________

______________________________________

୬. ତୁମ ଅଞ୍ଚଳରେ ଆଉ କେଉଁମାନେ ଏହିପରି ବଂଶ ବଢ଼ାନ୍ତି ?

______________________________________

■ ତଳ ଚିତ୍ରକୁ ଦେଖ । କାହାଠୁ କିଏ ଜନ୍ମ ହୋଇଛନ୍ତି କହ ।



୭. କ'ଣ ହେଉଛି ଲକ୍ଷ୍ୟ କର ।

| | | ପ୍ରତିକ୍ରିୟା | |
|---|---|---|---|
| ତେଲୁଣି ପୋକକୁ |  | ଛୁଇଁଲେ |  |
| ପଦ୍ମ ଫୁଲ, |  | ସୂର୍ଯ୍ୟ ଉଇଁଲେ |  |
| ଚାକୁଣ୍ଡା ଗଛ (ପତ୍ର ଖୋଲା), |  | ସୂର୍ଯ୍ୟାସ୍ତ ହେଲେ |  |
| ଚାଲୁଥିବା କଇଁଛ, |  | ଛୁଇଁଲେ |  |
| ଲାଜକୁଳି (ପତ୍ର ଖୋଲା) |  | ଆଘାତ ପାଇଲେ |  |

ଆଉ କିଏ ଏପରି ପ୍ରତିକ୍ରିୟା ପ୍ରକାଶ କରନ୍ତି ତା'ର ତାଲିକା କର ।

______________________________________

______________________________________

______________________________________

______________________________________

୮.



ଚିତ୍ରରେ ପିଲାଦୁଇଟି, ଗାଈ ଓ ଗଛ ପାଇଁ କ'ଣ ଦରକାର ବୋଲି ଜାଣୁଛନ୍ତି ?



Digitized by PPRACHIN, SOA




ଏଥିରୁ କ'ଣ ଜଣାଯାଏ ?

ଦିନ ରାତି ସବୁବେଳେ ଉଭୟ ଉଦ୍ଭିଦ ଓ ପ୍ରାଣୀମାନେ ଶ୍ୱାସକ୍ରିୟା କରନ୍ତି । ପ୍ରାଣୀମାନେ ପ୍ରଶ୍ୱାସରେ ବାୟୁରୁ ଅମ୍ଳଜାନ ଗ୍ରହଣ କରନ୍ତି । ନିଃଶ୍ୱାସରେ ଅଙ୍ଗାରକାମ୍ଳ ଗ୍ୟାସ୍ ଛାଡ଼ନ୍ତି ।

ଉଦ୍ଭିଦ ମଧ୍ୟ ଶ୍ୱାସକ୍ରିୟାରେ ବାୟୁରୁ ଅମ୍ଳଜାନ ଗ୍ରହଣ କରେ ଓ ଅଙ୍ଗାରକାମ୍ଳ ଗ୍ୟାସ୍ ଛାଡ଼ିଦିଏ । ମାତ୍ର ଦିନବେଳେ ଖାଦ୍ୟ ତିଆରି ପାଇଁ ଉଦ୍ଭିଦ ବାୟୁରୁ ଅଙ୍ଗାରକାମ୍ଳ ନିଏ ଓ ଅମ୍ଳଜାନ ବାୟୁମଣ୍ଡଳକୁ ଛାଡ଼େ ।

ଏଥିରୁ ଆମେ ଜାଣିଲେ —

-ମଣିଷ, ପଶୁପକ୍ଷୀ, କୀଟପତଙ୍ଗ ଓ ଗଛଲତା ଛୋଟରୁ ବଡ଼ ହୁଅନ୍ତି, ବଂଶବୃଦ୍ଧି କରନ୍ତି ଓ ପ୍ରତିକ୍ରିୟା ପ୍ରକାଶ କରିଥାନ୍ତି । ଏମାନେ ବଞ୍ଚିବା ପାଇଁ ଖାଦ୍ୟ ଦରକାର କରନ୍ତି ଓ ଶ୍ୱାସକ୍ରିୟା ପାଇଁ ଅମ୍ଳଜାନ ଆବଶ୍ୟକ କରନ୍ତି । ଏମାନେ ସମସ୍ତେ ଜୀବ । ଅନ୍ୟମାନେ ନିର୍ଜୀବ । ତୁମ ଚାରିପାଖେ ଥିବା ନିର୍ଜୀବମାନଙ୍କ ନାମ କହ ।

## ଜୀବ ଜଗତ



କେଉଁ ଗୁଡ଼ିକ

| | |
|---|---|
| ଉଦ୍ଭିଦ | |
| ପ୍ରାଣୀ | |



Digitized by PPRACHIN, SOA

ପ୍ରାଣୀ ଓ ଉଦ୍ଭିଦ ଉଭୟ ହେଉଛନ୍ତି ଜୀବ । ଜୀବମାନେ ଯେଉଁ ଲକ୍ଷଣ ଦେଖାଇଥାନ୍ତି (ଜୀବନ ଥାଏ, ଛୋଟରୁ ବଡ଼ ହୁଅନ୍ତି, ଖାଦ୍ୟ ଖାଇଥାନ୍ତି, ନିଃଶ୍ୱାସ ପ୍ରଶ୍ୱାସ ନେଇଥାନ୍ତି, ବଂଶ ବିସ୍ତାର କରିଥାନ୍ତି ।) ତାହା ଉଦ୍ଭିଦଙ୍କ ମଧ୍ୟରେ ବି ପରିଲକ୍ଷିତ ହୋଇଥାଏ । ତଥାପି ପ୍ରାଣୀ ଓ ଉଦ୍ଭିଦମାନଙ୍କ ମଧ୍ୟରେ କେତେକ ପାର୍ଥକ୍ୟ ରହିଛି ।

ଚାଲ, ଆମେ ଏବେ ସେହି ପାର୍ଥକ୍ୟଗୁଡ଼ିକ ବିଷୟରେ ଜାଣିବା ।



ଚିତ୍ରରେ ପ୍ରାଣୀ କ'ଣ କରୁଛି, ଯାହାକି ଉଦ୍ଭିଦ କରୁନାହିଁ ? ଲକ୍ଷ୍ୟ କର ।



ଲକ୍ଷ୍ୟ କର ଉଦ୍ଭିଦ କ'ଣ କରିପାରୁଛି, ଯାହାକି ପ୍ରାଣୀ କରୁନାହିଁ ?

## ଅଭ୍ୟାସ

୧. ତୁମ ଚାରିପଟେ ଯାହା ସବୁ ଅଛି ସେଗୁଡ଼ିକର ତାଲିକା କର ।

---------------------------------------------------------------

---------------------------------------------------------------

---------------------------------------------------------------

୨. ଗଛରେ ଥିବା ପତ୍ର ସ୍ଥାନରେ ଜୀବମାନଙ୍କ ନାମ ଲେଖ ।
ଗଛରୁ ଖସି ପଡ଼ିଥିବା ପତ୍ରରେ ନିର୍ଜୀବ ବସ୍ତୁର ନାମ ଲେଖ ।





Digitized by PPRACHIN, SOA

୩. ଯେ'ଯାହାର ସେ ତାହାର, ତୀର ଚିହ୍ନ ଦିଅ ।

ଜୀବ

| | |
|---|---|
| -ଏମାନେ ବଢ଼ନ୍ତି ନାହିଁ | -ନିଃଶ୍ୱାସ ପ୍ରଶ୍ୱାସ ନିଅନ୍ତି । |
| -ବଂଶବୃଦ୍ଧି କରନ୍ତି | -ବଂଶବୃଦ୍ଧି କରିପାରନ୍ତି ନାହିଁ |
| -ଖାଦ୍ୟ ଖାଇ ନଥାନ୍ତି | -ଜୀବନ ନଥାଏ |
| -ଜୀବନ ଥାଏ | -ଖାଦ୍ୟ ଖାଇଥାନ୍ତି |
| -ଚଳାବୁଲା କରନ୍ତି | -ଛୋଟରୁ ବଡ଼ ହୋଇଥାନ୍ତି |

ନିର୍ଜୀବ

୪. କାହା ପରେ କିଏ ? (ପ୍ରତିଧାଡ଼ିରେ ୧, ୨, ୩ ଲେଖ ।).




୫. ତଳେ ଥିବା ଖାଲିଘର ପୂରଣ କର ।

(କ) ଚଉକି, ଟେବୁଲ ତିଆରି ହୁଏ । କା ___

(ଖ) କାନ୍ଥରେ ଥାଇ, ପୋକ ଖାଏ । ___ ଟି ___ ଟି

(ଗ) ଶ୍ରେଣୀରେ ଥାଏ, ପିଲାଙ୍କ ଆଗରେ । କ ___ ପ ___

(ଘ) ଥଣ୍ଡ ନାଲିଆ, ଦେହ ଶାଗୁଆ । ___ ଆ

(ଙ) ପକେଟରେ ଥାଏ, ବ୍ୟାଗ୍‌ରେ ଥାଏ,
ଦରକାର ବେଳେ ଲେଖି ପକାଏ । ___ ___ ମ

**ତୁମ ପାଇଁ କାମ ।**

ଗୋଟିଏ କୁଣ୍ଡରେ ମଞ୍ଜିଟିଏ ପୋତି ପ୍ରତିଦିନ ପାଣି ଦିଅ । କୁଣ୍ଡଟିକୁ ସୂର୍ଯ୍ୟାଲୋକ ପଡୁଥିବା ସ୍ଥାନରେ ରଖ । ୨୦ ଦିନ ଭିତରେ କ'ଣ ପରିବର୍ତ୍ତନ ହେଉଛି ଲକ୍ଷ୍ୟ କର ଓ ଲେଖ ।

ଦିନ ସଂଖ୍ୟା
ଦିନ - ୧ →
ଦିନ - ୫ →
ଦିନ - ୧୦ →
ଦିନ - ୧୫ →
ଦିନ - ୨୦ →





Digitized by PPRACHIN, SOA

**କ'ଣ ଶିଖିବେ**

ସ୍ଥାନୀୟ ପରିବେଶକୁ ଅଧ୍ୟୟନ କରି ସେଗୁଡ଼ିକୁ ଜୀବ ଓ ନିର୍ଜୀବ ବସ୍ତୁ ଭାବେ ଶ୍ରେଣୀ ବିଭାଗ କରିବେ ।

**ସୂଚନା**

☞ ପାଠ ବହିରେ ପରିବେଶରୁ ଉପଲବ୍ଧ କିଛି ବସ୍ତୁ ପ୍ରାଣୀ ଓ ସେମାନଙ୍କ କାର୍ଯ୍ୟକଳାପକୁ ନିରୀକ୍ଷଣ କରି ଜୀବର ଲକ୍ଷଣ ପିଲାଙ୍କ ଦ୍ୱାରା ଆବିଷ୍କାର କରାଯିବାର ବ୍ୟବସ୍ଥା କରାଯାଇଛି ।

**ପ୍ରସ୍ତୁତି**

☞ ଶିକ୍ଷକ ଶ୍ରେଣୀରେ ପିଲାମାନଙ୍କୁ କିଛିକ୍ଷଣ ପାଇଁ ପ୍ରଥମେ କେବଳ ନାକ ବନ୍ଦ କରି ଓ ତା'ପରେ ନାକ ଓ ପାଟି ହାତରେ ଚାପିଧରି ବନ୍ଦ କରିବାକୁ କହନ୍ତୁ । ତା'ପରେ ପ୍ରତ୍ୟେକ ପିଲାଙ୍କୁ କ'ଣ ଅନୁଭବ କଲେ ତାହା ପଚାରନ୍ତୁ ।

☞ ଶିକ୍ଷକ ପିଲାମାନଙ୍କୁ ଦୁଇଦଳରେ ଭାଗ କରନ୍ତୁ । ଗୋଟିଏ ଦଳ ପିଲାଙ୍କୁ ବିଦ୍ୟାଳୟ ପରିସରରେ କିଛି ସମୟ ଦୌଡ଼ିବାକୁ କହନ୍ତୁ । ଅନ୍ୟଦଳକୁ ଚାଲି ଚାଲି ଯିବାକୁ କହନ୍ତୁ । ଶ୍ରେଣୀକୁ ଫେରିବା ପରେ ସେମାନେ କ'ଣ ଅନୁଭବ କରୁଛନ୍ତି ବ୍ୟକ୍ତିଗତ ଭାବେ ଆଲୋଚନା କରନ୍ତୁ ।

**କାମ**

ପିଲାମାନେ ଶିକ୍ଷଣକାର୍ଯ୍ୟଗୁଡ଼ିକୁ ଶିକ୍ଷକଙ୍କ ନିର୍ଦ୍ଦେଶାନୁସାରେ ନିଜେ ଅନୁଧ୍ୟାନ ଓ ପରୀକ୍ଷା କରି ନୂତନତ୍ୱକୁ ଜାଣିପାରିବେ ।

**ଆଲୋଚନା**

ବହିରେ ଦିଆଯାଇଥିବା ଚିତ୍ର ଓ ନିଜେ ପ୍ରସ୍ତୁତ କରିଥିବା ଚିତ୍ର ବା ମଡେଲ ସାହାଯ୍ୟରେ ଉଦ୍ଭିଦ ଓ ପ୍ରାଣୀମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ପିଲାମାନଙ୍କ ସାହାଯ୍ୟରେ (ଦଳଗତ) ଆଲୋଚନା କରି ସ୍ଥିର କରିବେ । ଆବଶ୍ୟକ ସ୍ଥଳେ ନୂତନ ତଥ୍ୟ ପିଲାଙ୍କୁ ବୁଝାଇ ଦେବେ ।

**ଆମେ ଜାଣିବା**

☞ ଜୀବମାନଙ୍କର ଜୀବନ ପ୍ରକ୍ରିୟା ଥାଏ । ଏହା ପ୍ରାଣୀର ବିଭିନ୍ନ ସଂସ୍ଥାନ ଯଥା- ପରିପାକ, ରକ୍ତ ସଂଚାଳନ, ନିଃଶ୍ୱାସ-ପ୍ରଶ୍ୱାସ ପ୍ରଭୃତିକୁ ପରିଚାଳନା କରେ, ଯାହାକି ନିର୍ଜୀବମାନଙ୍କର ନଥାଏ ।

**ପରିବେଶରୁ ସଂଗ୍ରହ**

☞ ପିଲାମାନେ କିଛି ସମୟ ପାଇଁ ବାହାରକୁ ଯାଇ କିଛି ଜିନିଷ ସଂଗ୍ରହ କରିଆଣି ସେଗୁଡ଼ିକୁ ଜୀବ ଓ ନିର୍ଜୀବ ଦୁଇ ଭାଗରେ ବିଭକ୍ତ କରିବେ ।

**ଦଳଗତ କାର୍ଯ୍ୟ**

☞ ପିଲାମାନଙ୍କୁ ଆବଶ୍ୟକ ଅନୁଯାୟୀ ବିଭିନ୍ନ ଦଳରେ ଭାଗକରି କିଛି ଜୀବ ଓ ନିର୍ଜୀବ ର ଚିତ୍ରକାର୍ଡ ଦଳମାନଙ୍କୁ ଦିଆଯିବ । ସେମାନେ ଚିତ୍ରଗୁଡ଼ିକୁ ଦେଖି କେଉଁଟି ଜୀବ, ଓ କେଉଁଟି ନିର୍ଜୀବ ତାହା ବାଛି ନେଇ କାନ୍ଥରେ ରଖାଯାଇଥିବା ପକେଟ୍ ବୋର୍ଡ଼ରେ ରଖିବେ । ଯେଉଁ ଦଳ ଶିଘ୍ର ସଠିକ୍ ଭାବରେ କାର୍ଯ୍ୟ ସମାପନ କରିଥିବେ ସେହି ଦଳ ବିଜୟୀ ହେବେ ।






Digitized by PPRACHIN, SOA

অন্য কার্য্য

ବିଭିନ୍ନ ଜୀବଙ୍କର ଚିତ୍ର ସଂଗ୍ରହ କରି ଗୋଟିଏ ଖାତାର ଗୋଟିଏ ପାଖରେ ଏବଂ ନିର୍ଜୀବ ବସ୍ତୁର ଚିତ୍ର କରି ଅନ୍ୟ ପାଖରେ ଅଠା ଲଗାଇ ଏକ ଫଟୋ ଆଲବମ୍ କରିବେ ।

ବୁଝ ଓ ଲେଖ, ଠିକ୍ ସ୍ଥାନରେ ' √ ' ଚିହ୍ନ ଓ ଭୁଲ୍ ଜାଗାରେ 'X' ଚିହ୍ନ ଦିଅ । ବେଙ୍ଗ, ଇଟା, ଜିଆ, କୁକୁର, କଇଁଛ, ଗଛ,ପଥର

| ଜୀବ / ବସ୍ତୁର ନାମ | ସାପ | ବେଙ୍ଗ | ଇଟା | ଜିଆ | କୁକୁର | ଗଛ | ପଥର |
|---|---|---|---|---|---|---|---|
| ଛୋଟରୁ ବଡ଼ହୁଏ | √ | | | | | | |
| ବଢ଼େ ନାହିଁ | X | | | | | | |
| ଖାଦ୍ୟ ଖାଏ | √ | | | | | | |
| ଖାଦ୍ୟ ଖାଏନି | X | | | | | | |
| ଚଳ ପ୍ରଚଳ ହୁଏ | √ | | | | | | |
| ସ୍ଥିର ରହେ | X | | | | | | |
| ପ୍ରଶ୍ୱାସ ନିଏ | √ | | | | | | |
| ପ୍ରଶ୍ୱାସ ନିଏନାହିଁ | X | | | | | | |
| ବଂଶ ବିସ୍ତାର କରେ | √ | | | | | | |

ପ୍ରକଳ୍ପ କାର୍ଯ୍ୟ

କୁଣ୍ଡରେ ଥିବା ଫୁଲଗଛକୁ ଗୋଟିଏ ପଲିଥିନ୍ ଦ୍ୱାରା ବାୟୁରୁଦ୍ଧକରି ଘୋଡ଼େଇ ରଖ, ଦିନକ ପରେ କ'ଣ ହେଉଛି ଲକ୍ଷ୍ୟ କରି ଲେଖ ।

ଉପକରଣ — ବିଭିନ୍ନ ପ୍ରକାର ଜୀବ ଓ ନିର୍ଜୀବର ଚିତ୍ର, ପକେଟ୍ ବୋର୍ଡ଼



Digitized by PPRACHIN, SOA

## ଉଦ୍ଭିଦର ବିଭିନ୍ନ ଅଂଶ

ସମୟ - ୧୨ ପିରିୟଡ୍



- ଗଛ କଥା ମନକୁ ଆସିଲେ ତୁମ ମନରେ କେଉଁ ରଙ୍ଗର ଧାରଣା ଆସେ ? ____________

-ଦିଆଯାଇଥିବା ଗଛଟିର ବିଭିନ୍ନ ଅଂଶକୁ ରଙ୍ଗ ଦିଅ ଓ ବିଭିନ୍ନ ଅଂଶର ନାମ ଲେଖ ।

____________________________________________

____________________________________________

- ଗଛର କିଏ କେଉଁଠି ଥାଏ ଲେଖ ।

ମାଟି ତଳେ ____________ ମାଟି ଉପରକୁ ____________

ଗଛର ଯେଉଁ ଅଂଶଟି ମାଟିତଳେ ଥାଏ, ତାହା ହେଉଛି ମୂଳ ବା ଚେର । ଏହି ମୂଳରୁ ଯେଉଁ ସରୁ ସରୁ ଶାଖା ପ୍ରଶାଖା ବାହାରିଛି, ସେଗୁଡ଼ିକୁ ଶାଖା ଚେର କୁହାଯାଏ ।





ପିଲାଟି ଗଛ ଉପାଡ଼ି ପାରୁ ନାହିଁ । କାରଣ କ'ଣ ? କହ ।

- କ'ଣ ଦେଖୁଛ ଲେଖ । ____________
- କ'ଣ ଦେଖୁଛ ଲେଖ । ____________

- ଗଛର କେଉଁ ଅଂଶ ମାଟିରୁ ପାଣିକୁ ଶୋଷେ ?

____________________________________________

- ଗଛଟି ସହଜରେ ଉପୁଡ଼ି ଯାଏ ନାହିଁ, କାହିଁକି ?

____________________________________________

- ଗଛର ଚେରରେ କ'ଣ ଲାଗିଛି ?

____________________________________________

ଚେର ମାଟିକୁ ଜାବୁଡ଼ି ଧରିଥାଏ ଓ ମାଟିରୁ ଜଳ ଓ ଖଣିଜ ଲବଣ ଶୋଷି ପତ୍ରକୁ ପଠାଏ ।





ଉଭୟ ଚିତ୍ରରେ କ'ଣ ପାର୍ଥକ୍ୟ ଦେଖୁଛ ?

ଗଛର ଉପର ଅଂଶରୁ ଯେଉଁ ଅଂଶ ମାଟି ତଳକୁ କ୍ରମେ କ୍ରମେ ସରୁ ହୋଇଥାଏ ତାହାକୁ ପ୍ରଧାନମୂଳ କୁହାଯାଏ ଏବଂ ଗଛର ମୂଳରୁ ଯେଉଁ ଗୋଛାଏ ସରୁ ସରୁ ଚେର ବାହାରି ଥାଏ ତାହାକୁ ଗୁଚ୍ଛ ମୂଳ କୁହାଯାଏ ।

- ପ୍ରଧାନ ମୂଳ ଓ ଗୁଚ୍ଛ ମୂଳ ଥିବା ଗଛଗୁଡ଼ିକର ନାମ ଲେଖ ।

| ପ୍ରଧାନ ମୂଳ | | ଗୁଚ୍ଛମୂଳ | |
|---|---|---|---|
| ଆମ୍ବ ଗଛ | ______ | ଧାନ | ______ |
| ______ | ______ | ______ | ______ |
| ______ | ______ | ______ | ______ |



Digitized by PPRACHIN, SOA

## କାଣ୍ଡ



■ ଉଭୟ ପାର୍ଶ୍ୱର ଚିତ୍ରରେ କ'ଣ ପାର୍ଥକ୍ୟ ଦେଖୁଛ ?

______________________________

କେତେଗୁଡ଼ିଏ ଗଛର କାଣ୍ଡରୁ ଶାଖା ପ୍ରଶାଖା ବାହାରି ଥାଏ । ଆଉ କେତେଗୁଡ଼ିଏ ଗଛରେ ଶାଖା ପ୍ରଶାଖା ନଥାଏ ।

■ ତୁମେ ଦେଖିଥିବା ଗଛଗୁଡ଼ିକର ନାମ ଲେଖ ।

| ଶାଖା ପ୍ରଶାଖା ଥିବା ଗଛ | ଶାଖା ପ୍ରଶାଖା ନଥିବା ଗଛ |
|---|---|
| | |

■ ରଙ୍ଗ ଦିଅ ।



● କ'ଣ ବୁଝୁଛ ଲେଖ-

| ପତ୍ରର ନାମ | ରଙ୍ଗ କ'ଣ | ପତ୍ରର ଆକାର କିପରି |
|---|---|---|
| | | |
| | | |
| | | |
| | | |
| | | |

ପତ୍ରର ଆକାର ଭିନ୍ନ ଭିନ୍ନ ଯଥା- ସରୁ, ଲମ୍ବା, ଅଣ୍ଡାକାର, ବୃତ୍ତାକାର, ଚଉଡ଼ା ଏବଂ ଏହାର ରଙ୍ଗ ସବୁଜ । ମାତ୍ର କେତେକ ବାକ୍ସ ଗଛର ପତ୍ର ନାନା ରଙ୍ଗର ।

## ଫୁଲ



● ରଙ୍ଗ ଅନୁସାରେ କେତେକ ଫୁଲର ନାମ ଲେଖ ।

| ରଙ୍ଗ | ଫୁଲର ନାମ |
|---|---|
| ଧଳା | |
| ନାଲି | |
| ଗୋଲାପି | |
| ହଳଦିଆ | |
| କମଳା ରଙ୍ଗ | |
| ନୀଳ | |



Digitized by PPRACHIN, SOA

■ ଫୁଲ ନଥିବା କେତେକ ଗଛର ନାମ ଲେଖ । ______, ______, ______, ______

ଗଛ ଓ ଲତାରେ ଫୁଲ ଫୁଟେ । ସେଗୁଡ଼ିକର ରଙ୍ଗ ଓ ଆକାର ଭିନ୍ନ ଭିନ୍ନ ।

| ଫଳ | ଫଳର ନାମ | ଆକାର |
|---|---|---|
| | | |
| | | |
| | | |

କେତେକ ଫୁଲରୁ ଫଳ ହୋଇଥାଏ । ବିଭିନ୍ନ ଗଛର ଫଳ ମଧ୍ୟ ବିଭିନ୍ନ ଆକାରର ହୋଇଥାଏ ।



| ଫଳ | ମଞ୍ଜିର ଆକାର କିପରି | କେତୋଟି ମଞ୍ଜି ଅଛି |
|---|---|---|
| ଆମ୍ବ | | |
| ମଟର | | |

ଏହିପରି ତୁମ ପରିବେଶରେ ମିଳୁଥିବା ଫଳଗୁଡ଼ିକର ନାମ ଲେଖ ।

ଯେଉଁଥିରେ ଗୋଟିଏ ମଞ୍ଜି ______________________

______________________

ଯେଉଁଥିରେ ଅଧିକ ମଞ୍ଜି ______________________

______________________



■ ମଞ୍ଜିରୁ ନୂଆଗଛ ହୁଏ ।

## ଉଭିଦର ଶ୍ରେଣୀ ବିଭାଗ

ବିଭିନ୍ନ ଗଛର ଚିତ୍ର




■ ଚିତ୍ରରେ ଥିବା ଗଛମାନଙ୍କୁ ତଳେ ଦିଆଯାଇଥିବା ବିଭାଗ ଅନୁସାରେ ସଜାଇ ଲେଖ ।

| ଲତା | ସାନଗଛ ବା ଗୁଳ୍ମ | ବୁଦାଳିଆ ଗଛ | ବଡ଼ଗଛ |
|---|---|---|---|
| | | | |



Digitized by PPRACHIN, SOA

ତୁମେ ଜାଣିଥିବା ବିଭିନ୍ନ ଗଛର ନାମ ଲେଖ ।

______________________

______________________

______________________

______________________

______________________

ଏମାନଙ୍କ ମଧ୍ୟରୁ କିଏ କେଉଁ ଶ୍ରେଣୀଭୁକ୍ତ ।

ଲତା ______________

ସାନଗଛ ବା ଗୁଳ୍ମ ______________

ବୁଦାଳିଆ ଗଛ ______________

ବଡ଼ ଗଛ ______________




## ଅଭ୍ୟାସ

୧. କାହା ପରେ କିଏ କ୍ରମାନୁସାରେ ସଜାଡ଼ି ଲେଖ ।







୨. ଗୋଟିଏ ପୂର୍ଣ୍ଣାଙ୍ଗ ଗଛର ଚିତ୍ର ଅଙ୍କନ କର । ବିଭିନ୍ନ ଅଂଶଗୁଡ଼ିକୁ ଚିହ୍ନାଅ । ଚିତ୍ରରେ ରଙ୍ଗ ଦିଅ ।

୩. **ବିଭିନ୍ନ କାର୍ଯ୍ୟ** — **ଗଛର କେଉଁ ଅଂଶ**

ମାଟିରୁ ପାଣି ଟାଣେ ______________

ଖାଦ୍ୟ ଯୋଗାଏ ______________

ମାଟିକୁ ଜାବୁଡ଼ି ଧରେ ______________

### ତୁମ ପାଇଁ କାମ :

୧.

| କାହାର ଆୟୁଷ କେତେ ? କେଉଁ ଘରେ କେଉଁ ଗଛ ? ଲେଖ । | | |
|---|---|---|
| ଏକ ବର୍ଷରୁ କମ୍ | ଦୁଇ ତିନି ବର୍ଷ | ବହୁତ ବର୍ଷ |
| | | |

୨. ତାଲିକା ପୂରଣ କର ।

| ଋତୁ | ଫଳ | ଫୁଲ | ପନିପରିବା |
|---|---|---|---|
| ବର୍ଷାଋତୁ | | | |
| ଗ୍ରୀଷ୍ମଋତୁ | | | |
| ଶୀତଋତୁ | | | |



Digitized by PPRACHIN, SOA

### କ'ଣ ଶିଖିବେ

- ଉଭିଦର ମୁଖ୍ୟ ଅଂଶଗୁଡ଼ିକୁ ଚିହ୍ନଟ କରିବେ ।
- ଆକାର, ଜୀବନ କାଳ ଓ ଋତୁ ଅନୁସାରେ ଉଭିଦର ଶ୍ରେଣୀ ବିଭାଗ କରିବେ ।

### ସୂଚନା

ଉଭିଦର ବିଭିନ୍ନ ଅଂଶ ଓ ଏହାର କାର୍ଯ୍ୟ, ଆକାର ଓ ଜୀବନ କାଳ ଦୃଷ୍ଟିରୁ ଉଭିଦର ଶ୍ରେଣୀ ବିଭାଗ । ଋତୁ ଅନୁସାରେ ବିଭିନ୍ନ ପ୍ରକାର ଫସଲ, ଫଳ, ଫୁଲ, ପରିବା ସମ୍ବନ୍ଧରେ ଶିକ୍ଷକ ବୁଝିବେ ।

### ପ୍ରସ୍ତୁତି

- ବିଭିନ୍ନ ଉଭିଦର ଚିତ୍ର, ଚିତ୍ରକାର୍ଡ଼, ଜୀବନ୍ତ ଛୋଟ ଛୋଟ ଗଛ (ବିଭିନ୍ନ ଅଂଶ ଦର୍ଶାଯାଇଥିବା) ମନ୍ଦାର, କୃଷ୍ଣଚୂଡ଼ା ବା ପରିବେଶରେ ଉପଲବ୍ଧ ପାଇଁ ଫୁଲ, ଫଳ ଓ ମଂଜି ସଂଗ୍ରହ କରି ପିଲାମାନଙ୍କ ପାଇଁ ପ୍ରତ୍ୟକ୍ଷ ପର୍ଯ୍ୟବେକ୍ଷଣର ସୁଯୋଗ ସୃଷ୍ଟି କରନ୍ତୁ ।
- ଡ୍ରଇଂ ସିଟ୍‌ରେ ଅଙ୍କିତ ବିଭିନ୍ନ ଅଂଶଥିବା ଉଭିଦର ଚିତ୍ରକୁ ପ୍ରାୟ ୫/୬ ଖଣ୍ଡରେ କଟାଯାଇ ପିଲାମାନଙ୍କୁ ଦଳରେ ଯୋଡ଼ିବା ପାଇଁ କୁହାଯିବ । ଯେଉଁ ଦଳ ଶୀଘ୍ର ଓ ସଠିକ୍ ଭାବେ ଯୋଡ଼ି ପାରୁଛନ୍ତି, ସେହି ଦଳକୁ ପ୍ରଶଂସା କରିବେ ।
- ମଞ୍ଜିରୁ ଅଙ୍କୁରୋଦ୍‌ଗମ ହେବାବେଳେ ଯେଉଁ ଗଜା ପ୍ରଥମେ ବାହାରେ, ତାହା ଉଭିଦର ଭାବୀମୂଳ ବୋଲି କହି ଶିକ୍ଷକ ଶିକ୍ଷାର୍ଥୀମାନଙ୍କର ସନ୍ଦେହ ଦୂର କରିବେ । ମୂଳର କାର୍ଯ୍ୟ, କାଣ୍ଡ ଓ ପତ୍ରର କାର୍ଯ୍ୟ, ଫୁଲ,ଫଳ, ଓ ବୀଜ ଉଭିଦର ଜୀବନ ଚକ୍ରରେ କିପରି ସହାୟକ ତାହା ବୁଝାନ୍ତୁ । ପିଲାମାନେ ବଗିଚାରୁ ଗୋଟିଏ ଗୋଟିଏ ଗଛ ଆଣିବେ । ପ୍ରତ୍ୟେକେ ଗଛର ବିଭିନ୍ନ ଅଂଶ ଚିହ୍ନଟ କରି ଧାଡ଼ିଏ ଲେଖାଏଁ କହନ୍ତୁ ।

### ଆମେ ଜାଣିବା

ଉଭିଦର ବଂଶ ବିସ୍ତାର, ବୀଜ ବିକ୍ଷେପ, ମୃତ୍ତିକା ସଂରକ୍ଷଣ, ବୃଷ୍ଟିପାତ ଓ ବାୟୁରେ ଅମ୍ଳଜାନ ବୃଦ୍ଧି, ଉଭିଦର ବହୁଳତା ସହିତ ଓତଃପ୍ରୋତ ଭାବେ ଜଡ଼ିତ ।

### ଦଳଗତ କାର୍ଯ୍ୟ

ପିଲାମାନଙ୍କୁ ୪ଟି ଦଳରେ ଭାଗ କରାଯିବ ।

୧ମ ଦଳ -ନିଜ ପରିବେଶର ବିଭିନ୍ନ ଫୁଲ, ଫଳ ଓ ପରିବାର ତାଲିକା କରିବାକୁ କୁହାଯିବ ।

୨ୟ ଦଳ -ଋତୁ ଅନୁଯାୟୀ ନିଜ ପରିବେଶରେ ଉତ୍ପାଦିତ ହେଉଥିବା ବିଭିନ୍ନ ଫସଲ ତାଲିକା କରିବେ ।

୩ୟ ଦଳ -ନିଜ ପରିବେଶରେ ଥିବା ବିଭିନ୍ନ ବର୍ଣ୍ଣର ଫୁଲର ତାଲିକା କରିବେ ।

୪ର୍ଥ ଦଳ -ନିଜ ପରିବେଶରେ ଥିବା ବଡ଼ଗଛ, ସାନଗଛ ଓ ବୁଦାଳିଆ ଗଛର ତାଲିକା କରିବେ ଓ ଦଳରେ ଉପସ୍ଥାପନା କରିବେ ।

### ପ୍ରକଳ୍ପ

(୧) ପିଲାମାନେ ଛୋଟ ଛୋଟ ଚାରା, ବିଭିନ୍ନ ଫୁଲ ସଂଗ୍ରହ କରି ସମ୍ବାଦ ପତ୍ର ମଧ୍ୟରେ ରଖି ଓଜନିଆ ପଦାର୍ଥର ଚାପ ଦେଇ ଶୁଖିବା ପର୍ଯ୍ୟନ୍ତ ୪/୫ ଦିନ ଅପେକ୍ଷା କରିବେ । ସେହି ଚାରା, ଫୁଲ ଶୁଖିଯିବା ପରେ ଧଳା ଡ୍ରଇଂସିଟ୍‌ରେ ଅଠାଥିବା ଟେପ୍ ଦେଇ ଲଗାଇବେ । ସେଥିରେ କେଉଁ ଠାରୁ ସଂଗ୍ରହ କରିଥିଲେ, ସେହି ଚାରା ବା ଫୁଲର ନାମ, ତାରିଖ ଓ ନିଜର ନାମ, ଲେଖି ଏହି ପ୍ରକାର ୫/୧୦ ଫର୍ଦ୍ଦ ପ୍ରସ୍ତୁତ କରିବେ ।



Digitized by PPRACHIN, SOA

☞ ପ୍ରଶ୍ନାବଳୀର ବଡ଼ ଗଛ , ସାନ ଗଛ, ବୁଦାଳିଆ ଗଛର ଜୀବନକାଳ ସହିତ ତାହାର ଶ୍ରେଣୀ ବିଭାଗ କିପରି ସମ୍ପୃକ୍ତ ତାହା ବୁଝାଇବେ ।

☞ ଋତୁ ସହ ବିଭିନ୍ନ ଫୁଲ, ଫଳ, ପରିବା, ଫସଲର ଉତ୍ପାଦନ ସହ ସମ୍ପର୍କ ସ୍ଥାପନ କରିବେ ।

**ପିଲାଙ୍କ କାମ**

☞ ଚିତ୍ର ଅଧ୍ୟୟନ ଓ ବାସ୍ତବ ଗଛ ସହ ତୁଳନା କରି ମତାମତ ଦେବେ ଓ ଲିପିବଦ୍ଧ କରିବେ ।

☞ ପ୍ରଶ୍ନାବଳୀଗୁଡ଼ିକୁ ବୁଝି ଉତ୍ତର ଲେଖିବେ ।

☞ ଉଦ୍ଭିଦର ଜୀବନ ଚକ୍ର ଯଥା:- ମଞ୍ଜି, ଚାରା, ମୂଳ, କାଣ୍ଡ, ପତ୍ର, ଫୁଲ, ଫଳ, ସମ୍ବନ୍ଧରେ ବାସ୍ତବ ଧାରଣା ସୃଷ୍ଟି କରିବା ପାଇଁ ବ୍ୟକ୍ତିଗତ କାର୍ଯ୍ୟ ସହ ଆବଶ୍ୟକ ସ୍ଥଳେ ଦଳଗତ ଆଲୋଚନା କରିବେ ।

**ଷାଣ୍ମାସିକ ପରୀକ୍ଷା**

(୨) ପିଲାମାନେ ନିଜ ଘର ବାଡ଼ିରେ ୪' X ୪' ସ୍ଥାନରେ ଗାତ ଖୋଳି ମରିଚ, ସୋରିଷ, ଶାଗ, ମେଥି ଯେକୌଣସି ଗୋଟିକର ମଞ୍ଜି ପକାଇ ପ୍ରତିଦିନ କିଛି କିଛି ପାଣି ଦେଇ ପର୍ଯ୍ୟବେକ୍ଷଣ କରି ନିର୍ଦ୍ଦିଷ୍ଟ ସମୟ ପରେ କେଉଁ ମଞ୍ଜିର ବା ଚାରାର ବୃଦ୍ଧି ସର୍ବାଧିକ ଓ କେଉଁ ମଞ୍ଜିର ବୃଦ୍ଧି ସବୁଠାରୁ କମ୍ ତାହା ପର୍ଯ୍ୟବେକ୍ଷଣ କରିବେ ଓ ଶ୍ରେଣୀରେ ନିଜ ନିଜ ମଧ୍ୟରେ ଆଲୋଚନା କରିବେ ।

(୩) ଯେକୌଣସି ଛୋଟ ଅନାବନା ଗଛଟିଏ ଉପାଡ଼ି ଆଣି ତାକୁ ଦେଖି ସେହିଭଳି ଚିତ୍ର କରିବେ । ଚିତ୍ରରେ ରଙ୍ଗ ଦେବେ ଓ ସେଥିରେ ଗଛଟିର ବିଭିନ୍ନ ଅଂଶ ଚିହ୍ନାଇବେ ।

(୪) ବିଭିନ୍ନ ମଞ୍ଜି ସଂଗ୍ରହ କରି ରଖିବେ ।

**ଅଭିନୟ ସଙ୍ଗୀତ**

ବରଷା କହେ, ମାଟିରେ ତୁ ବତୁରି ଯା,<br>
ମାଟି କହେ, ମଞ୍ଜିରେ ତୁ ଗଜୁରି ଯା' ।<br>
ମଞ୍ଜି କହେ, ଗଜାରେ ତୁ ବଢ଼ି ବଢ଼ି ଯା',<br>
ଗଜା (କିଏ) କହେ, ପତ୍ରରେ ତୁ ମେଲି ମେଲି ଯା' ।<br>
ପତର କହେ ଡାଳକୁ, (କାହାକୁ) ତୁ ବଢ଼ି ବଢ଼ି ଯା,<br>
ଡାଳ କହେ, ଫୁଲରେ (କାହାକୁ) ତୁ ଫୁଟି ଯା ।<br>
କିଏ କହେ ଫଳରେ (କାହାକୁ) ତୁ ପାଚି ପାଚି ଯା',<br>
ପାଚିଲେ ପିଲେ ଖାଇବେ ତୋତେ କରିଣ ବଡ଼ ଆଁ... ।

ଶ୍ରେଣୀରେ ଶିକ୍ଷକ ଅଭିନୟ କରି ସଂଗୀତଟିକୁ ଗାଆନ୍ତୁ । ପିଲାମାନେ ତା'କୁ ଅନୁକରଣ କରନ୍ତୁ । ମଝିରେ ମଝିରେ କିଏ, କାହାକୁ ଲଗାଇ ଗୀତଟି ଗାଆନ୍ତୁ ।



Digitized by PPRACHIN, SOA

# ପ୍ରାଣୀର ଶରୀର ଗଠନ ଓ ଖାଦ୍ୟାଭ୍ୟାସ

ସମୟ - ୧୫ ପିରିୟଡ୍




ମଣିଷ ଶରୀରର ବିଭିନ୍ନ ଅଙ୍ଗର ଚିତ୍ର ।




- 

| ବାହାରୁ ଦେଖାଯାଏ | ବାହାରୁ ଦେଖାଯାଏ ନାହିଁ |
|---|---|
| ହାତ, ______ ______ | ବୃକ୍କ, ______ ______ |
| ______ ______ ______ | ______ ______ ______ |
| ______ ______ ______ | ______ ______ ______ |

> ବାହ୍ୟଅଙ୍ଗ - ଯେଉଁ ଅଙ୍ଗଗୁଡ଼ିକୁ ଆମେ ବାହାରୁ ଦେଖିପାରୁ ।
> ଆଭ୍ୟନ୍ତରୀଣ ଅଙ୍ଗ- ଯେଉଁ ଅଙ୍ଗଗୁଡ଼ିକ ଶରୀର ଭିତରେ ଅଛି ।

- 

| ଅଙ୍ଗର ନାମ | ଅବସ୍ଥିତି | କାର୍ଯ୍ୟ |
|---|---|---|
| ଫୁସ୍‌ଫୁସ୍ | | |
| ପାକସ୍ଥଳୀ | | |
| ହୃତ୍ପିଣ୍ଡ | | |



Digitized by PPRACHIN, SOA

**ବାଘମାମୁଁର ବାହାଘର**
**ଭୋଜି ଖାଇଯିବା, ବାହାର ।**

ବାଘ ମାମୁଁର ବାହାଘର । ସବୁ ଜୀବଜନ୍ତୁଙ୍କୁ ନିମନ୍ତ୍ରଣ ହୋଇଛି । ଘୋଷଣା ହୋଇଛି, ସେହି ଦିନ ପାଇଁ ବାଘ,ଛେଳି, ବିରାଡ଼ି, ମୂଷା ମଧ୍ୟରେ କିଛି ଶତ୍ରୁତା ରହିବ ନାହିଁ ।

ମହାରାଜ ବାଘ ସ୍ୱୟଂ ଦରବାରରେ ବିଜେ ହୋଇଛନ୍ତି । ପାଖରେ ଭାଲୁ, ବିଲୁଆ, ହାତୀ ପ୍ରଭୃତି ଉପସ୍ଥିତ । ଭାଲୁ ତାଙ୍କର ଭୋଜି ଆୟୋଜନ କଥା ଜଣାଇ କହିଲା- ''ମହାରାଜ !



ଭୋଜି ପାଇଁ ମୁଁ ସହରୀ ବ୍ୟବସ୍ଥା କରିଛି । ପଲଉ, ମାଂସ, କ୍ଷୀରୀ, ଡାଲି, ଛେନା ତରକାରୀ, ଖଟା, ଭଜା, ମାଛ, ମିଠା ପ୍ରଭୃତିର ବ୍ୟବସ୍ଥା ହୋଇଛି । ପୁରୀରୁ ନୈଷ୍ଠିକ ବ୍ରାହ୍ମଣ ଆସି ପୁରୋହିତ ହେବେ । ଖୋର୍ଦ୍ଧାରୁ ଶଙ୍ଖ ଆସିବ, ପାରଳାଖେମୁଣ୍ଡିରୁ ଦକ୍ଷିଣୀ ବାଜା ଆସିବ ଓ ସମ୍ବଲପୁରରୁ ଡାଲଖାଇ ଗୀତନାଚ ଆସିବ । ମହାରାଜ କେବଳ 'ହଁ' କଲେ କାମଟି ଆରମ୍ଭ ହୋଇଯିବ ।''

ବାଘମାମୁଁ ଜାଣେ,ବିଲୁଆ ବଡ଼ ଚତୁର । ଏଣୁ ତା' ଆଡ଼କୁ ଚାହିଁ ପଚାରିଲା, ''କିହୋ ! ତମେ କ'ଣ କହୁଛ, ଭଲ ହେବଟି ?''

ବିଲୁଆ କହିଲା-''ମହାରାଜ ! ମୋ ମତରେ 'ନିଜ ରୁଚି ଭୋଜନ, ପର ରୁଚି ପୋଷାକ ।' ଆମ ଜନ୍ତୁ ରାଇଜରେ ଏସବୁ ମଣିଷ ଭୋଜନ ପସନ୍ଦ ନୁହେଁ । ହାତୀ ପାଇଁ ତାଳ ତ, କୁକୁର ପାଇଁ ମାଂସ । ଆମର ଖାଇବା ଅଭ୍ୟାସ ବି ସମସ୍ତଙ୍କର ସମାନ ନୁହେଁ । କିଏ ପାରା ଭଳି ଖୁଣ୍ଟି ଖୁଣ୍ଟି ଖାଏ ତ କିଏ ଗାଈ ଭଳି ପାକୁଳି କରେ । ସମସ୍ତଙ୍କ ଖାଦ୍ୟ ବି ଅଲଗା ଅଲଗା । ଏଣୁ ଖାଦ୍ୟ ବ୍ୟବସ୍ଥା ଜୀବଜନ୍ତୁଙ୍କ ପସନ୍ଦ ମୁତାବକ କରାଯାଉ । କୋଇଲିର ଗୀତ, ଶୁଆ ଶାରୀର କଥା, ମାଙ୍କଡ଼ର ଖୋଁ ଖାଁ, ଭାଲୁର ବାଜା, ଶଙ୍ଖଚିଲର ଶଙ୍ଖ, ଗଧର ସବାରି, ପାରାର ଘୁମୁ ଘୁମୁ ମନ୍ତ୍ର । ଥାଉ ଥାଉ ଆମକୁ ପୁରୀ ବ୍ରାହ୍ମଣ ଖୋର୍ଦ୍ଧା ଶଙ୍ଖ, ପାରଳାଖେମୁଣ୍ଡି ବାଜା ଓ ସମ୍ବଲପୁରର ନାଚ,ଗୀତ ବେଶୀ ମଜା ଲାଗିବନି ।

ବାଘ ମାମୁଁଙ୍କୁ କଥାଟି ପସନ୍ଦ ହେଲା । ବିଲୁଆକୁ ସାବାସି ଦେଲେ । ସମସ୍ତେ ମିଳିମିଶି ଭୋଜିର ଆୟୋଜନ କରିବାକୁ ଆଦେଶ ଦେଲେ ।

ଆସ ଆମେ ଦେଖିବା, ବାହାଘର ଭୋଜି କେମିତି ହେଉଛି-





Digitized by PPRACHIN, SOA



| | ଏହିପରି କିଏ କିଏ ଖାଆନ୍ତି ? |
|---|---|
| ଖୁଣ୍ଟି ଖୁଣ୍ଟି | |
| ଥଣ୍ଟରେ ଟିକି ଟିକି କରି | |
| ମାଂସକୁ ଫାଡ଼ି ଫାଡ଼ି | |
| ମାଂସକୁ ଖୁମ୍ପି ଖୁମ୍ପି | |
| ଥଣ୍ଟରେ ଗିଳିକରି | |
| ଚୋବାଇ ଚୋବାଇ | |
| ପାକୁଳି କରି | |
| ଚାକୁ ଚାକୁ କରି | |
| ଜିଭରେ ଚାଟି | |

ପାରା, କୁକୁଡ଼ା, ଶୁଆ, ଶାଗୁଣା, କପୋତ, ଚିଲ, ଗାଈ, ମାଛରଙ୍କା, କୁକୁର, ଛେଳି, ମେଣ୍ଢା, ବଳଦ, ଘୋଡ଼ା, ହାତୀ, ବାଘ, ହରିଣ.................. ଆଉ କିଛି ତୁମେ ମନେ ପକାଅ ଓ ଉପର ତାଲିକାରେ ଲେଖ ।

ଏମାନେ କ'ଣ ଖାଉଛନ୍ତି ?



■ କିଏ କିଏ କ'ଣ ଖାଆନ୍ତି ଲେଖ ।

| ଗଛଡ଼ାଳ | ପଶୁପକ୍ଷୀଙ୍କ ମାଂସ | ଉଭୟ ଡାଳପତ୍ର ଓ ମାଂସ |
|---|---|---|
| | | |

ଯେଉଁ ପ୍ରାଣୀମାନେ କେବଳ ଉଦ୍ଭିଦ ଖାଆନ୍ତି,ସେମାନେ ତୃଣଭୋଜୀ ।
ଯେଉଁ ପ୍ରାଣୀମାନେ ଅନ୍ୟ ପ୍ରାଣୀମାନଙ୍କୁ ଖାଆନ୍ତି,ସେମାନେ ମାଂସାଶୀ ।
ଯେଉଁ ପ୍ରାଣୀମାନେ ଉଭୟ ଉଦ୍ଭିଦ ଓ ପ୍ରାଣୀ ଖାଆନ୍ତି,ସେମାନେ ସର୍ବଭୁକ୍ ।

■ କିଛି ତୁମେ ଲେଖ ।

| ପ୍ରାଣୀର ନାମ | | ତା'ର ଖାଦ୍ୟ |
|---|---|---|
| ଗାଈ, ବଳଦ | → | ଘାସ, ପାଳ, କୁଣ୍ଡା |
| ________ | → | ________ |
| ________ | → | ________ |
| ________ | → | ________ |



Digitized by PPRACHIN, SOA

## ଖାଦ୍ୟ ଶୃଙ୍ଖଳ



### ଅଭ୍ୟାସ

୧. ଆସ ଯୋଡ଼ିବା ।

ଏସବୁ କାହାର ଖାଦ୍ୟ ?

ହାତୀ



ସାପ



ଝିଟିପିଟି



ଗାଈ



୨. କିଏ କିପରି ଖାଏ ? ଧାଡ଼ିର ଅଲଗା ଜୀବକୁ ଗୋଲ ବୁଲାଅ ।

(କ) ବାଘ ହାତୀ ବିଲୁଆ ସିଂହ

(ଖ) ବିରାଡ଼ି କୁକୁର ବାଘ ଗାଈ

(ଗ) ପାରା ଶୁଆ ବଗ କୁକୁଡ଼ା

୩. ଖାଦ୍ୟ-ଖାଦକ କ୍ରମରେ ସଜାଅ ।

ବିଲେଇ, ଧାନ, ମୂଷା ⟶ ଧାନ, ମୂଷା, ବିଲେଇ

ହେଟାବାଘ, ଗାଈ, ଘାସ ⟶ ____________

ସାପ, ପୋକ, ବେଙ୍ଗ ⟶ ____________

କୁକୁଡ଼ା, ପୋକ, ବିଲୁଆ ⟶ ____________

୪. ଖାଲିଘରେ କ'ଣ ହେବ ଲେଖ ।




୫. ମୁଁ କିଏ ?

| | | |
|---|---|---|
| (କ) | | ଳି |
| (ଖ) | ଶୁ | |
| (ଗ) | | ଲ |

(କ) - ମୁଁ ଏକ ପଶୁ । ମୁଁ କେବଳ ଡାଳପତ୍ର ଖାଏ ।

(ଖ) - ମୁଁ ଗୋଟେ ପକ୍ଷୀ, ମୋର ଥଣ୍ଟ ଲାଲ୍, ମୁଁ ଟିକି ଟିକି କରି କାଟି ଖାଏ ।

(ଗ) - ମୁଁ ଗୋଟେ ପକ୍ଷୀ, ମୁଁ ଥଣ୍ଟରେ ମାଂସକୁ ଖୁମ୍ପି ଖୁମ୍ପି ଖାଏ ।



Digitized by PPRACHIN, SOA

**କ'ଣ ଶିଖିବେ** ପ୍ରାଣୀର ଶରୀର ଗଠନ (ଆଭ୍ୟନ୍ତରୀଣ ଅଙ୍ଗ) ଓ ଖାଦ୍ୟାଭ୍ୟାସ ସମ୍ବନ୍ଧରେ ଜାଣିବେ ।

**ସୂଚନା** ପ୍ରାଣୀର ଆଭ୍ୟନ୍ତରୀଣ ଅଂଗ- ଫୁସ୍‌ଫୁସ୍, ହୃତପିଣ୍ଡ, ପାକସ୍ଥଳୀର ଅବସ୍ଥିତି ଓ କାର୍ଯ୍ୟ ସମ୍ବନ୍ଧରେ ଧାରଣା ଦିଆଯାଇଛି ।
ବିଭିନ୍ନ ପ୍ରାଣୀମାନେ କ'ଣ କ'ଣ ଖାଆନ୍ତି ଓ କିପରି ଖାଆନ୍ତି ତାହା ବାଘମାମୁଁର ବାହାଘର ଗପ ମାଧ୍ୟମରେ ଉପସ୍ଥାପନ କରାଯାଇଛି ।

**ପ୍ରସ୍ତୁତି**

- ଶିକ୍ଷକ ଆଭ୍ୟନ୍ତରୀଣ ଅଙ୍ଗ - ଫୁସ୍‌ଫୁସ୍, ହୃତପିଣ୍ଡ, ପାକସ୍ଥଳୀର ମଡେଲ୍ ଓ ମାନବ ଶରୀରର ଆଭ୍ୟନ୍ତରୀଣ ଅଙ୍ଗ ଦର୍ଶାଯାଇଥିବା ଚାର୍ଟ ଶ୍ରେଣୀ କକ୍ଷକୁ ଆଣନ୍ତୁ ।
- ପିଲାମାନେ ଗୋଲାକାରରେ ବସି କେଉଁ ପ୍ରାଣୀ କିପରି ଖାଏ, ଶ୍ରେଣୀ କକ୍ଷରେ ତା'ର ଅଭିନୟ (ଯଦି ସମ୍ଭବ- ପିଲାମାନେ ବିଭିନ୍ନ ପ୍ରାଣୀର ମୁଖା ପିନ୍ଧି) କରିବେ ।
- ଶିକ୍ଷକ ଶ୍ରେଣୀ କକ୍ଷରେ ପିଲାମାନଙ୍କୁ ଶରୀର ମଧ୍ୟରେ ଆଭ୍ୟନ୍ତରୀଣ ଅଙ୍ଗମାନଙ୍କର ଅବସ୍ଥିତି ଓ ଏହାର କାର୍ଯ୍ୟ ସଂପର୍କରେ ଆଲୋଚନା କରନ୍ତୁ । 'ବାଘମାମୁଁର ବାହାଘର' ଗପଟିକୁ କହନ୍ତୁ ।
- ବିଭିନ୍ନ ପ୍ରକାର ପ୍ରାଣୀମାନଙ୍କ ଖାଦ୍ୟାଭ୍ୟାସ ସମ୍ବନ୍ଧରେ ବୁଝାନ୍ତୁ । ଆବଶ୍ୟକ ସ୍ଥଳେ ପିଲାମାନଙ୍କୁ କାର୍ଯ୍ୟପର୍ଦ୍ଦ ପୂରଣ ସମୟରେ ସହାୟତା କରନ୍ତୁ ।

**ଆମେ ଜାଣିବା** ହୃତ୍‌ପିଣ୍ଡ , ଫୁସ୍‌ଫୁସ୍ ଓ ପାକସ୍ଥଳୀ ବ୍ୟତୀତ ଶରୀର ମଧ୍ୟରେ ଆଉ କେତେକ ଆଭ୍ୟନ୍ତରୀଣ ଅଙ୍ଗ ଥାଏ ।
ଯଥା- ବୃକକ୍, ଯକୃତ, ମସ୍ତିଷ୍କ ଇତ୍ୟାଦି

**କିଏ, କେଉଁଠି ଅଛନ୍ତି**

ଦୁଇ ଦଳ ମଧ୍ୟରେ- ବିଭିନ୍ନ କାର୍ଡ଼ରେ ଶରୀରର ମୁଖ୍ୟ ଆଭ୍ୟନ୍ତରୀଣ ଅଂଗର ଚିତ୍ର ଥିବ । ଆଉ କେତେକ କାର୍ଡ଼ରେ ସେମାନଙ୍କ ଅବସ୍ଥିତି ଓ ସେଗୁଡ଼ିକର କାର୍ଯ୍ୟ ଲେଖାଥିବ । ଆଭ୍ୟନ୍ତରୀଣ ଅଂଗ ଥିବା କାର୍ଡ଼ ଗୋଟିଏ ଦଳକୁ ଓ ତାହାର କାର୍ଯ୍ୟ ଓ ଅବସ୍ଥିତିର କାର୍ଡ଼ ଦ୍ୱିତୀୟ ଦଳକୁ ଦିଆଯିବ । ପ୍ରଥମ ଦଳ ଆଭ୍ୟନ୍ତରୀଣ ଅଂଗ ଲେଖା ଗୋଟିଏ କାର୍ଡ଼ ପ୍ରଦର୍ଶନ କଲେ, ଦ୍ୱିତୀୟ ଦଳ ତାହାର ଠିକ୍ କାର୍ଯ୍ୟ ଓ ଅବସ୍ଥିତି କାର୍ଡ଼ ଦେଖାଇବେ । ଏହା କିଛି ପର୍ଯ୍ୟାୟ ହେବା ପରେ ଦୁଇଦଳ ମଧ୍ୟରେ କାର୍ଡ଼ ଅଦଳ ବଦଳ କରି ଖେଳିବେ ।

**କିଏ କ'ଣ ଖାଏ**

ପିଲାମାନଙ୍କୁ ଦୁଇଟି ଦଳରେ ବିଭକ୍ତ କରି ସାମନା ସାମନି ବସାଇବେ । ମଝିରେ ବିଭିନ୍ନ ପଶୁଙ୍କ ନାମ ଲେଖା କାର୍ଡ଼ ଥିବ । ଗୋଟିଏ ଦଳ ଗୋଟିଏ କାର୍ଡ଼ ଉଠାଇଲେ, ଅନ୍ୟ ଦଳ ସେଇ ପଶୁ କ'ଣ ଖାଏ ଓ କିପରି ଖାଏ ତାହା କହିବେ । ଠିକ୍ କହିଲେ ପଏଣ୍ଟ ପାଇବେ ।

**ପ୍ରକଳ୍ପ**

- ନିଜ ଅଞ୍ଚଳରେ ଥିବା ବିଭିନ୍ନ ପ୍ରାଣୀ ମାନଙ୍କ ଖାଦ୍ୟ ଓ ଖାଇବା ପ୍ରଣାଳୀକୁ ପର୍ଯ୍ୟବେକ୍ଷଣ କରି ଲିପିବଦ୍ଧ କରିବେ ।
- ହୃତ୍‌ପିଣ୍ଡ, ଫୁସ୍‌ଫୁସ୍ ଓ ପାକସ୍ଥଳୀର ମଡ଼େଲ୍ ତିଆରି କରିବେ ।

ଉପକରଣ — ବିଭିନ୍ନ ଆଭ୍ୟନ୍ତରୀଣ ଅଙ୍ଗର ଚିତ୍ର କାର୍ଡ଼, ବିଭିନ୍ନ ପଶୁଙ୍କ ନାମଲେଖା ହୋଇଥିବା ଶବ୍ଦକାର୍ଡ଼ ।



Digitized by PPRACHIN, SOA

## ପପି ଯାଇଥିଲା ସର୍କସ ଦେଖି ସମୟ - ୧୩ ପିରିୟଡ୍



(ପପି ସର୍କସ୍ ଦେଖି ଫେରିଲା । ଗାଢ଼ ନିଦରେ ଶୋଇଲା । ସ୍ୱପ୍ନରେ ଦେଖିଲା ଆଖି, ନାକ, କାନ, ପାଟି, ଦାନ୍ତ, ଜିଭ, ହାତ, ଗୋଡ଼ ସମସ୍ତେ ମିଶି ତା' ପାଖରେ ଅଳି କରୁଛନ୍ତି । ସେମାନଙ୍କ ଦାବି—ପପି ସେମାନଙ୍କ ପାଇଁ କିଛି କିଛି କାମ କରୁ ।)

ପପି- ତୁମ ସମସ୍ତଙ୍କୁ ମୁଁ ପୋଷୁଛି । ଏଥିପାଇଁ ମୋର କେତେ ଶକ୍ତି ଖର୍ଚ୍ଚ ହେଉଛି । ତଥାପି ତମେ ସବୁ ଆଜି କାହିଁକି ଏମିତି ଅଳି କରୁଛ ? ତମେ ମୋ ପାଇଁ କି କାମ କରକି ?



କ'ଣ କହିଲ, ଆମେ କିଛି କରୁନୁ ? ମୋ ପାଇଁ ତୁମେ ଏ ଜଗତକୁ ଦେଖିପାରୁଛ । ମୋତେ ବନ୍ଦ କରି ତୁମ କାମ ସବୁ କରି ଦେଖ ତ । ତଥାପି ତମେ ମୋତେ ଭାରି କଷ୍ଟ ଦେଉଛ ।

ପପି- ତମେ କ'ଣ ସବୁ କଷ୍ଟ ପାଉଛ କି ?



ତମେ ବାହାରେ ବୁଲିବା ବେଳେ ଧୂଳି ବାଲି ଉଡ଼ିଆସି ମୋ ନିକଟରେ ଜମି ଯାଆନ୍ତି । ନିଦରୁ ଉଠିବା ବେଳେ ଏଗୁଡ଼ିକ ଲେଞ୍ଜରା ହୋଇ ମୋ ଦେହରୁ ବାହାରନ୍ତି । ଆଉ ତୁମେ ଧୂଆଁରେ ଧୂଳିରେ ବୁଲିଲେ ମୋତେ ଜଳାପୋଡ଼ା ହୁଏ । ତମେ ବି ମୋତେ ମକଚି ପକାଅ । ଓଃ, କି କଷ୍ଟ ! ଏମିତି ହେଲେ ଅଳ୍ପ ଦିନରେ ମୁଁ ଦୁର୍ବଳ ହୋଇଯିବି, କାମ କରି ପାରିବି ନାହିଁ । କହିଦେଉଛି, ବେଳହୁଁ ସାବଧାନ ।

ପପି- ସେଥିପାଇଁ ମୁଁ କ'ଣ କରିବି ?



ସକାଳୁ ଉଠି ଥଣ୍ଡା ପାଣିରେ ମୋତେ ଟିକିଏ ଧୋଇ ଦିଅ । ଧୂଆଁ ଧୂସରରେ ବୁଲନି । ଟି.ଭିକୁ ଅତି ପାଖରୁ ଦେଖନି କି ସୂର୍ଯ୍ୟକୁ ସିଧା ଚାହଁନି । ଆଉ.........



ଆରେ, ରହମ ଆଖି ! ମୋ ଗୁହାରି ଟିକିଏ ଶୁଣାଏ । ମୋ ଦେଇ ତ ତୁମେ ସବୁ କଥା ଭାଷା, ଗୀତ ସଙ୍ଗୀତ, ସ୍ୱର ଶବଦ ଶୁଣୁଛ । କିନ୍ତୁ ବାଣ ଫୁଟିବା ପାଖରେ, ଡାକ ବାଜି ଯନ୍ତ୍ର ପାଖରେ ରହି, ଘଡ଼ଘଡ଼ି ଶବ୍ଦ ଶୁଣି ମତେ କଷ୍ଟ ଦେଉଛ, କାହିଁକି ? ବେଳେ ବେଳେ ମୋ ଭିତରେ କାଠି, ଖଡ଼ି ପୂରାଉଛ ! ଏଣିକି ମୁଁ ଆଉ ଏ କଷ୍ଟ ସହିବି ନାହିଁ ।

ପପି- ହଉ ହେଲା ବାବା । ଏବେ ନାକ କ'ଣ କହୁଛି କି .....



ମୋ ଯୋଗୁଁ ପରା ତୁମେ ବାସନା ବାରି ପାରୁଛ । ଆଉ ତମ ପାଟି ବନ୍ଦ କରି ମୋର ଦୁଇ ପୁଡ଼ାକୁ ହାତରେ ବନ୍ଦ କରି ଦେଖ ତ । ଏବେ ବୁଝିଲ ତ ! ମୋ ଦେଇ ତୁମର ଶ୍ୱାସକ୍ରିୟା ଚାଲେ । ସଫା କନାରେ ମୋତେ ଟିକିଏ ସଫା କରୁଥାଅ । ମୋ ଦେହରୁ ଶିଙ୍ଘାଣି ବାହାରିଲେ ତୁମକୁ କ'ଣ ଭଲ ଲାଗେ ?



Digitized by PPRACHIN, SOA

ପପି- ନାକଟି ଭାରି ଭଲ । ତାର ଦାବି କମ୍ ।



ଆମ କଥା ଟିକେ ଶୁଣ । ମୋ ଦେଇ ତୁମେ ଖାଦ୍ୟ ଖାଇପାରୁଛ । ମୋ ଜିଭ ସ୍ୱାଦ ବାରୁଛି ।ଆମ ଯୋଗୁଁ ତୁମେ କଥା ଭାଷା କରିପାରୁଛ । ମୋ ଦାନ୍ତ ତ.......



ରହ, ରହ ! ମୋ କଥା ମୁଁ କହେ । ମୁଁ ତୁମ ଖାଦ୍ୟକୁ ଭଲଭାବେ ଚୋବାଇ ଥାଏ । ମୋ ଯୋଗୁଁ ତୁମ ମୁହଁ ସୁନ୍ଦର ଦିଶେ, କଥା ବି ସ୍ପଷ୍ଟ ହୁଏ । ମୋ ଭଲ ମନ୍ଦ ଟିକେ ବୁଝ ।

ପପି- ମୁଁ ତମ ପାଇଁ କ'ଣ କରିଥାନ୍ତି, କହୁନା !



ଆରେ ଭାଇ, ଖାଇବା ପରେ ଭଲଭାବେ କୁଳି କରିବ । ଶୋଇବା ଆଗରୁ ଓ ନିଦରୁ ଉଠି ମୋତେ ଘଷି ସଫା କରିବ । ଏସବୁ କ'ଣ ତୁମ କାମ ନୁହେଁ ? ଖାଇବା ପୂର୍ବରୁ ତୁମ ଗୋଡ଼ ହାତକୁ ଟିକେ ସଫା କରୁଥା ।'



ଦାନ୍ତ ଠିକ୍ କହିଛି । ମୁଁ ସଫା ତ ଦୁନିଆ ସଫା । ମୋ ଦେଇ ପରା ତୁମେ ସମସ୍ତଙ୍କ ଯତ୍ନ ନେଇ ପାରିବ, ସବୁକାମ ଆଗ କରି ପାରିବ । 'ମୁଁ ତୁମ ପାଇଁ ମୁଖ୍ୟ ଅଂଶ'', ଏ କଥା ଭୁଲି ଯାଅନା ।



ଆଉ ମୁଁ ? କ'ଣ କିଛି ନୁହେଁ ? ମୁଁ ନଥିଲେ ତୁମେ ଗୋଟିଏ ଜାଗାରେ ପଡ଼ିରହି ଥାଆନ୍ତ । ବଲ୍ ଖେଳ, ସାଇକେଲ୍ ଚଲା, ଧାଁ ଦଉଡ଼, ସବୁଥିରେ ମୁଁ ଆଗୁଆ ।

ଚର୍ମ- ରହ ମ ! ମୁଁ ତ ତୁମ ସମସ୍ତଙ୍କୁ ଧରି ରଖିଛି । ଆଉ ଚାଦର ଭଳି ପପିକୁ ଘୋଡ଼ାଇ ରଖିଛି । ମୋତେ ବି ସଫାସୁତରା ରଖ । ନହେଲେ କାଛୁ କୁଣ୍ଡିଆରେ ଦେହସାରା କୁଣ୍ଡେଇ ହେଉଥିବ । 'ଅଖା ଧୋଉଥିବ, ଗୁଣ ଗାଉଥିବ । ଆମେ ସବୁ ବାହ୍ୟ ଅଙ୍ଗ ବୋଲି ଆମକୁ ହେଳା କରୁଛ କି ?

ପପି- ଆରେ ହଁ ସତେ ତ ! ଏତେ କଥା ମୁଁ ଦିନେହେଲେ, ଭାବି ନଥିଲି । ଏବେ ମୁଁ ବୁଝୁଛି- ତୁମ ସମସ୍ତଙ୍କ ଯତ୍ନ ନେବା ନିହାତି ଦରକାର । ଏହା ସଙ୍ଗେ ସଙ୍ଗେ ମୋର ସବୁ ସାଙ୍ଗ ସାଥୀଙ୍କୁ ବି ଏ ବିଷୟରେ କହିବି । କ'ଣ ଭାଇମାନେ ! ଆମ ଭଲ ମନ୍ଦ କଥା ଆମେ ବୁଝିବା ନାହିଁ ତ , ଆଉ କିଏ ବୁଝିବ ?

(ପପିର ନିଦ ଭାଙ୍ଗିଛି । ସେ ତରବର ହୋଇ ଶେଯରୁ ଉଠି ନିଜ ଗୋଡ଼, ହାତ, ନାକ,କାନ, ଆଖିକୁ ଅଣ୍ଡାଳି ପକାଇଛି ।)

## ଅଭ୍ୟାସ

୧. ତୁମେ କେଉଁ କେଉଁ କାମ କର ?

ଆଖିରେ ________________

ନାକରେ ________________

କାନରେ ________________

ଜିଭରେ ________________

ଗୋଡ଼ରେ ________________

ହାତରେ ________________

ଦାନ୍ତରେ ________________

୨. ସର୍କସ ଖେଳରେ କେତେବେଳେ କେଉଁ ଅଙ୍ଗଟି କାର୍ଯ୍ୟ କରିଥାଏ ?



________________

________________



Digitized by PPRACHIN, SOA



________________



________________



________________



________________



________________



________________



________________

୩. କାହିଁକି ହୁଏ, ଲେଖ ।

ଦାନ୍ତ ଶୀଘ୍ର ପଡ଼ିଯାଏ




୪. କେଉଁ ଅଙ୍ଗ ଉପରେ ପ୍ରଭାବ ପକାଇବ ?



– ପାଖରୁ ଟିଭି ଦେଖିଲେ
– ଧୂଆଁ ଓ ଗ୍ୟାସ ସଂସ୍ପର୍ଶରେ ଆସିଲେ
– ସୂର୍ଯ୍ୟକୁ ସିଧା ଚାହିଁଲେ
– ମିଞ୍ଜି ମିଞ୍ଜି ଆଲୁଅରେ ପଢ଼ିଲେ

୫. କାହାକୁ ବୁଝାଏ ?




- ଜନ୍ମରୁ ଅନ୍ଧ
- ଅନ୍ଧାରରେ ଦେଖି ନ ପାରିବା
- ଦୂର ଜିନିଷ ଦେଖି ନ ପାରିବା
- ନିକଟ ଜିନିଷ ଦେଖି ନ ପାରିବା

୬. କାନ ପାଇଁ କ'ଣ ଭଲ ନୁହେଁ ଚିହ୍ନାଅ ।





Digitized by PPRACHIN, SOA

୭. କିଏ କାହାର ?

| | |
|---|---|
| ଉକୁଣି...... | ପାଟି |
| ଅନ୍ଧାରକଣା | ହାତ |
| ବେରି ବେରି | ଗୋଡ଼ |
| କାଛୁ କୁଣ୍ଡିଆ | ଆଖି |
| ପୋଲିଓ..... | ଚର୍ମ |
| | ମୁଣ୍ଡ |

୮. କେଉଁ କାମ, କେବେ/କେତେବେଳେ କରିବ, କହ ।



୯. କେଉଁଗୁଡ଼ିକ ଆମର ବାହ୍ୟ ଅଙ୍ଗ ?





Digitized by PPRACHIN, SOA

**କ'ଣ ଶିଖିବେ:** ମଣିଷ ଶରୀରର ବାହ୍ୟ ଅଙ୍ଗ ଗୁଡ଼ିକର କାର୍ଯ୍ୟ ଓ ଯତ୍ନ ବିଷୟରେ ଜାଣିବେ ।

**ସୂଚନା**

- ମଣିଷ ଶରୀରର ବିଭିନ୍ନ ବାହ୍ୟ ଅଙ୍ଗର କାର୍ଯ୍ୟକୁ ନେଇ ସର୍କସ ଖେଳର ଚିତ୍ର ଦିଆଯାଇଛି ।
- ବାହ୍ୟ ଅଙ୍ଗଗୁଡ଼ିକର କାର୍ଯ୍ୟ ଓ ଯତ୍ନକୁ ନେଇ ସର୍କସ ଖେଳର ଚିତ୍ର ଦିଆଯାଇଛି ।
- ବାହ୍ୟ ଅଙ୍ଗଗୁଡ଼ିକର କାର୍ଯ୍ୟ ଓ ଯତ୍ନକୁ ପରୋକ୍ଷ ଭାବେ କଥୋପକଥନ ଶୈଳୀରେ ଉପସ୍ଥାପନ କରାଯାଇଛି ।

**ପ୍ରସ୍ତୁତି**

- ଭାଇ କହିଲେ- ''ଆଖି ଛୁଅଁ କାନ ଛୁଅଁ'' -ଶିକ୍ଷଣ କାର୍ଯ୍ୟ
- ବାବୁଲି, କଣ୍ଢେଇର ଆଖି ନାହିଁରେ, ସେ କେମିତି ଦେଖିବ ?
- ସର୍କସ ଖେଳର ଚିତ୍ର ଦେଖି ପ୍ରତ୍ୟେକ ପିଲା ଗୋଟିଏ ବାକ୍ୟ କହିବେ ।
- ପିଲାଙ୍କ ଦ୍ୱାରା ବିଷୟଟିକୁ ଅଭିନୟ କରାନ୍ତୁ ।
- ବାହ୍ୟ ଅଙ୍ଗଗୁଡ଼ିକର ଚିତ୍ର ଅଙ୍କନ କରି ପିଲାମାନଙ୍କୁ ପ୍ରଦର୍ଶନ କରାନ୍ତୁ ।
- ଆଖି,କାନ, ନାକ ପ୍ରଭୃତି ବାହ୍ୟ ଅଙ୍ଗର ଯତ୍ନ ନେବା ପ୍ରଣାଳୀକୁ ପ୍ରତ୍ୟକ୍ଷ ଭାବରେ ପ୍ରଦର୍ଶନ କରନ୍ତୁ ।

**ଉପକରଣ**

- ବାହ୍ୟ ଅଙ୍ଗଗୁଡ଼ିକର ମଡେଲ
- ପୂର୍ଣ୍ଣାଙ୍ଗ ପିଲାଟିର ଚାର୍ଟ, ଯେଉଁଥିରେ କି ବିଭିନ୍ନ ଅଙ୍ଗ ଚିହ୍ନଟ ହୋଇଥିବ ।

**ଆମେ ଜାଣିବା** ଗ୍ରାମାଞ୍ଚଳରେ ଅନେକ ଲୋକ ପିଲାଙ୍କର ବିଭିନ୍ନ ଅଙ୍ଗ ସଂପର୍କିତ ଅସୁବିଧା ପ୍ରତି ସଚେତନ ନଥାନ୍ତି । କାନ ପାଚିବା, ଦାନ୍ତ ପୋକ ଖାଇବା, ଅନ୍ଧାରକଣା ପ୍ରଭୃତି ଅସୁବିଧା ଲକ୍ଷ୍ୟ କରିବା ମାତ୍ରେ ସଂପୃକ୍ତ ପିତା ମାତାଙ୍କୁ ଜଣାଇ ପ୍ରତିକାର ପାଇଁ ଉପଯୁକ୍ତ ପରାମର୍ଶ ଦିଅନ୍ତୁ । ଶାରୀରିକ ଆଂଶିକ ଅକ୍ଷମ (ବାଧିତ) ପିଲାଙ୍କର ଶିକ୍ଷଣ ସାମର୍ଥ୍ୟ ଅନ୍ୟ ପିଲାଙ୍କ ସହିତ ସମାନ ଥାଏ ସେହି ପିଲାମାନେ ସାଧାରଣ ପିଲାଙ୍କ ସହ ମିଶି ଏକତ୍ର ପଢ଼ି ପାରିବେ । ସେଭଳି ପିଲାଙ୍କ ପାଇଁ ସ୍ୱତନ୍ତ୍ର ଦୃଷ୍ଟି ଦିଅନ୍ତୁ ।

**ଆସ ଖେଳିବା** ପିଲା ୩ ଦଳରେ ବିଭକ୍ତ ହେବେ । ଗୋଟିଏ ଡବାରେ ଆଖି, କାନ, ନାକ ପ୍ରଭୃତି ନାମ ଲେଖା ହୋଇଥିବା କାଗଜ ଚିରିକୁଟି ରହିବ । ଚିରିକୁଟିରେ ବାହାରିଥିବା ଅଙ୍ଗ ଉପରେ ଦଳଗତ କାର୍ଯ୍ୟ କରିବେ ।

୧ମ ଦଳ - ଅଙ୍ଗର କାର୍ଯ୍ୟ

୨ୟ ଦଳ - ଅଙ୍ଗର ଯତ୍ନ

୩ୟ ଦଳ- ଯତ୍ନ ଅଭାବଜନିତ ରୋଗ ଓ ପ୍ରତିକାର ବ୍ୟବସ୍ଥା

**ଅଭିନୟ**

- ପିଲାମାନେ ନିଜକୁ ଏକ ବାହ୍ୟ ଅଙ୍ଗ ରୂପେ ଭାବି ଏକକ ଅଭିନୟ କରିବେ । (ମୁଁ କିଏ, କ'ଣ କରେ, ମୁଁ କେଉଁ ପ୍ରକାର ଯତ୍ନ ଚାହେଁ, ଯତ୍ନ ଅଭାବରେ ରୋଗ ଓ ତା'ର ପ୍ରତିକାର ବ୍ୟବସ୍ଥା ।)

**ପ୍ରକଳ୍ପ**

- ପିଲାମାନେ ଆଖି, କାନ, ନାକ, ପାଟି ପ୍ରଭୃତିର ଚିତ୍ର ବା ମଡେଲ୍ ତିଆରି କରିବେ ।

**ଉପକରଣ** ଆଖି, କାନ, ନାକ, ଜିଭ, ପାଟି ଇତ୍ୟାଦି ଲେଖାଥିବା କାଗଜ ଚିରିକୁଟି ।

**ଚତୁର୍ଥ ଏକକ ପରୀକ୍ଷଣ**



Digitized by PPRACHIN, SOA

# ବସ୍ତୁର ଗୁଣ ଓ ଧର୍ମ

ସମୟ - ୧୯ ପିରିୟଡ୍




- ଚିତ୍ରରେ ଥିବା କେଉଁ କେଉଁ ଜିନିଷ ତୁମ ଘରେ ଅଛି ? ସେଗୁଡ଼ିକର ନାମ ଲେଖ ।

ତୁମ ଘରେ ଥିବା ବସ୍ତୁ, ଯାହାକି ଏ ଚିତ୍ରରେ ନାହିଁ, ସେଗୁଡ଼ିକର ନାମ ଲେଖ ।

| | |
|---|---|
| | |

- ଏଥିରୁ କ'ଣ ସବୁ ତିଆରି ହୁଏ ଲେଖ ।
















- ଲୁହା, କାଠ, ପ୍ଲାଷ୍ଟିକ୍, ସୁନା, କାଗଜ ପ୍ରଭୃତିରୁ ବିଭିନ୍ନ ଜିନିଷ ତିଆରି କରାଯାଏ ।
- ମୂଳ ଜିନିଷକୁ ପଦାର୍ଥ ଓ ସେଥିରୁ ତିଆରି ହେଉଥିବା ଜିନିଷକୁ ବସ୍ତୁ କୁହାଯାଏ ।




■ ତୁମ ଅଞ୍ଚଳରେ ଥିବା କିଛି ବସ୍ତୁର ନାମ ଲେଖ ।

ଧଳା ରଙ୍ଗର ______

କଳା ରଙ୍ଗର ______

ଲାଲ ରଙ୍ଗର ______

ଶାଗୁଆ ରଙ୍ଗର ______

ହଳଦିଆ ରଙ୍ଗର ______

■ ରଙ୍ଗ ଲଗାଅ ।







ରଙ୍ଗ ଦେଖି କେତେକ ବସ୍ତୁକୁ ଚିହ୍ନି ହୁଏ । ରଙ୍ଗ ବସ୍ତୁର ଏକ ଗୁଣ ।



ବୁଢ଼ୀଟିଏ ଟୋକେଇ ଧରି ହାଟରୁ ଫେରୁଥିଲା । କ୍ଲାନ୍ତି ମେଣ୍ଟାଇବା ପାଇଁ ଗଛମୂଳେ ବସିଲା ।ନିଦରେ ଢୁଳେଇଲା । ଗଛ ଉପରେ ମାଙ୍କଡ଼ଟିଏ ଥିଲା । ସେ ତଳକୁ ଆସି ଟୋକେଇରେ ଥିବା ଜିନିଷ ସବୁକୁ ଏ ହାତରୁ ସେ ହାତକୁ କରି ଖେଳିଲା । ଶେଷରେ ଦୁଇ ଭାଗ କଲା । ହଠାତ୍ ବୁଢ଼ୀ ନିଦରୁ ଉଠିଯିବାରୁ ସେ ଦୌଡ଼ି ପଳାଇଲା । ବୁଢ଼ୀ ତା' ପଛରେ ଗୋଡ଼େଇଲା । ମାଙ୍କଡ଼ ଅଧାରେ ଛାଡ଼ିଥିବା କାମଟିକୁ ତୁମେ କର ।




Digitized by PPRACHIN, SOA




| ମାଙ୍କଡ଼ର ଭାଗ ବଣ୍ଟା | |
|---|---|
| ——କଳରା—— | ——ବାଇଗଣ—— |
| ——ପଥର—— | ——କାଚଗୋଲି—— |
| ——କାଙ୍କଡ଼—— | ——ଦର୍ପଣ (କାଚ)—— |

- -ମାଙ୍କଡ଼ ଭାଗ କରିଥିବା ଜିନିଷକୁ ଛୁଇଁଲେ ତୁମ ହାତକୁ କିପରି ଲାଗେ ?
  -ତୁମ ଘର ପରିବେଶରେ ଥିବା ଖଦଡ଼ା ଓ ଚିକ୍କଣ ଜିନିଷର ତାଲିକା କର ।

ଚିକ୍କଣ ______________________________

ଖଦଡ଼ା ବା ଆବଡ଼ା ଖାବଡ଼ା ______________________________

> ବସ୍ତୁଟି ଚିକ୍କଣ ବା ଆବଡ଼ାଖାବଡ଼ା ଜାଣିବା ପାଇଁ ବସ୍ତୁ ଉପରେ ଆଙ୍ଗୁଳି ଚଳାଇ ଅନୁଭବ କରିବାକୁ ହେବ । ଏହି ଗୁଣ ଅନୁସାରେ ବସ୍ତୁ ଦୁଇ ପ୍ରକାରର । ଚିକ୍କଣ ବସ୍ତୁ ଓ ଆବଡ଼ାଖାବଡ଼ା ବସ୍ତୁ ।

- ବଳକା କାମ ତୁମେ କର ।




କେଉଁ ଦୃଷ୍ଟିରୁ ଏସବୁ ଜିନିଷ ପରସ୍ପର ଅଲଗା ହେଲେ ?

______________________________

______________________________

______________________________

> **ନରମ ଓ କଠିନ ବସ୍ତୁର ଆଉ ଏକ ଗୁଣ । ଏହି ଗୁଣ ବା ଧର୍ମ ଅନୁସାରେ ବସ୍ତୁଗୁଡ଼ିକ ଦୁଇ ପ୍ରକାରର ଯଥା - କଠିନ ବସ୍ତୁ ଓ ନରମ ବସ୍ତୁ ।**

ଏବେ ଆମେ ବସ୍ତୁର ତିନୋଟି ଗୁଣ କଥା ଜାଣିଲେ । ସେଗୁଡ଼ିକ ହେଲା- ରଙ୍ଗ (ରଙ୍ଗିନ୍ ବା ରଙ୍ଗହୀନ), ଚିକ୍କଣ ବା ଖଦଡ଼ା, ଟାଣ ବା ନରମ । ଏହି କେତୋଟି ଗୁଣକୁ ଆମେ ସହଜରେ ଜାଣିପାରୁ । ସେଗୁଡ଼ିକ ସାହାଯ୍ୟରେ ବସ୍ତୁଗୁଡ଼ିକୁ ମଧ୍ୟ ଚିହ୍ନିପାରୁ ।

**ତୁମ ପାଇଁ କାମ:**

ବିଚରା ଦାନ୍ତ ନଥିବା ମୂଷା!

୧. କ'ଣ କ'ଣ ଖାଇବ ସେଗୁଡ଼ିକୁ ଲାଞ୍ଜ ବଢ଼ାଇ ଚିହ୍ନୁଛି, ତାକୁ ଟିକେ ସାହାଯ୍ୟ କର, ତା' ଲାଞ୍ଜକୁ ବଢ଼ାଅ ।




୨. କିଏ ଅଲଗା ?

(କ) ମାଙ୍କଡ଼ାପଥର ମାର୍ବଲ ଇଟା ପଥର → ( )

(ଖ) ଲହୁଣି ଚିନି ଲୁଣ ମିଶ୍ରି → ( )

(ଗ) ଅଟା ପାଉଡ଼ର ସୁଜି ମଇଦା → ( )

(ଘ) ସିମେଣ୍ଟ ବାଲି ସିନ୍ଦୂର ଫଗୁ → ( )



Digitized by PPRACHIN, SOA

୩. କାହା କାହାର ରଙ୍ଗ ସମାନ, ଯୋଡ଼ ।

| | |
|---|---|
| ଆକାଶ | କେଶ |
| ଗଛ | କନିଅରି ଫୁଲ |
| ହଳଦୀବସନ୍ତ | ଶୁଆ |
| କୋଇଲି | ଚୂନ |
| ବଗ | ନିଆଁ |
| ସୂର୍ଯ୍ୟ | ମହମ |
| | ବଙ୍ଗୋପସାଗର |
| | ସିମେଣ୍ଟ |

୪. ଆସ ଖୋଜି ଆଣିବା ।

ବିଭିନ୍ନ ରଙ୍ଗର ପକ୍ଷୀର ପର →

ବିଭିନ୍ନ ରଙ୍ଗର ପତ୍ର →

ଚିକ୍‌କଣ ବାଲିଗରଡ଼ା →

ପଥର →

ବିଭିନ୍ନ ରଙ୍ଗର ମଞ୍ଜି । →



Digitized by PPRACHIN, SOA

**କ'ଣ ଶିଖିବେ**

- ବସ୍ତୁର ଧର୍ମ ବା ଲକ୍ଷଣ ବିଷୟରେ ଜାଣିବେ ।
- ରଂଗ, ରଚନା (Texture) କଠିନତା ବା କୋମଳତା ବସ୍ତୁର ବିଭିନ୍ନ ଧର୍ମ ଅଟେ । ଏହିସବୁ ଧର୍ମକୁ ଭିତ୍ତି କରି ବସ୍ତୁକୁ ଚିହ୍ନି ହୁଏ ।
- ଏହି ଧର୍ମଗୁଡ଼ିକ ଅନୁସାରେ ବସ୍ତୁଗୁଡ଼ିକର ଶ୍ରେଣୀ ବିଭାଗ କରିବେ ।

**ସୂଚନା**

- ପାଠ ବହିରେ ବସ୍ତୁ ଓ ପଦାର୍ଥ ମଧ୍ୟରେ ଥିବା ପାର୍ଥକ୍ୟକୁ ପିଲାଙ୍କୁ ଅବଗତ କରାଇବା ପାଇଁ ପର୍ଯ୍ୟବେକ୍ଷଣ ଅଭ୍ୟାସ କାର୍ଯ୍ୟର ସୁଯୋଗ ଅଛି ।
- ପ୍ରତ୍ୟେକ ବସ୍ତୁର ଧର୍ମ ଭିନ୍ନ ଭିନ୍ନ
- ଧର୍ମ ଅନୁସାରେ ବସ୍ତୁମାନଙ୍କୁ ବିଭିନ୍ନ ବିଭାଗରେ ବିଭକ୍ତିକରଣ କରାଯାଏ ।

**ପ୍ରସ୍ତୁତି**

- ପରିବେଶରୁ ବିଭିନ୍ନ ବସ୍ତୁ ସଂଗ୍ରହ କରି ପିଲାମାନଙ୍କ ଆଗରେ ଉପସ୍ଥାପନ କରନ୍ତୁ । ବସ୍ତୁର ଉପସ୍ଥାପନା ପାଇଁ ପ୍ରସ୍ତୁତି ।
- ବସ୍ତୁଗୁଡ଼ିକର ବିଭିନ୍ନ ଧର୍ମ ଯଥା- ରଙ୍ଗ, କଠିନତା, କୋମଳତା ଇତ୍ୟାଦି ବିଷୟରେ ଆଲୋଚନା କରନ୍ତୁ ।
- ପିଲାମାନେ ନିଜେ ପରୀକ୍ଷା କରି ବସ୍ତୁଗୁଡ଼ିକର ତାଲିକା ଓ ବର୍ଗୀକରଣ କରିବେ, ବର୍ଗୀକରଣ କରିବା ବେଳେ ବସ୍ତୁର ରଂଗ, କୋମଳତା, କଠିନତା ଓ ରଚନାକୁ ଦୃଷ୍ଟି ଦେବେ ।

**ପିଲାଙ୍କ କାମ**

ବିଭିନ୍ନ ପ୍ରକାର ପରିବା, ବିଭିନ୍ନ ରଙ୍ଗର ଫୁଲ, ଫଳ, ମଂଜି, ଘରେ ବ୍ୟବହାର ହେଉଥିବା ବିଭିନ୍ନ ପଦାର୍ଥ ଯଥା- ହଳଦିଗୁଣ୍ଡ, ମଇଦା, ଅଟା, ପାଉଡର, ଲୁଣ, ତେଲ ଇତ୍ୟାଦି ପିଲାମାନଙ୍କୁ ପ୍ରତ୍ୟକ୍ଷ ବ୍ୟବହାର ପାଇଁ ଦେଇ ବିଭିନ୍ନ ବସ୍ତୁର ଧର୍ମ ପରୀକ୍ଷା ପାଇଁ ଶ୍ରେଣୀରେ ସୁଯୋଗ ସୃଷ୍ଟି କରନ୍ତୁ ।

**ଶ୍ରେଣୀ ବିଭାଗ**

ପିଲା ନିଜେ ସଂଗ୍ରହ କରିଥିବା ବିଭିନ୍ନ ବସ୍ତୁ ଓ ଶିକ୍ଷକଙ୍କ ଠାରୁ ପାଇଥିବା ବସ୍ତୁଗୁଡ଼ିକର ଧର୍ମ ଅନୁସାରେ ବିଭିନ୍ନ ଶ୍ରେଣୀ ବିଭାଗ ଓ ତାଲିକା ପୂରଣ କରିବେ ଓ ନିଜେ ଜାଣିଥିବା(ଯାହା ଶ୍ରେଣୀରେ ପାଇ ନଥିବେ) ବସ୍ତୁଗୁଡ଼ିକର ମଧ୍ୟ ତାଲିକା କରି ଦଳ ମଧ୍ୟରେ ଆବଶ୍ୟକ ଆଲୋଚନା କରିବେ ।

**ଅଧିକ ତଥ୍ୟ**

ବସ୍ତୁର ଭଙ୍ଗୁରତା, ନମନୀୟତା, ଦ୍ରବଣୀୟତା, ସ୍ୱଚ୍ଛତା, ସ୍ୱାଦ, ଓ ଗନ୍ଧ ଇତ୍ୟାଦି ବସ୍ତୁର ଭୌତିକ ଧର୍ମ ଅଟନ୍ତି । ଏହିସବୁ ଧର୍ମ ଦ୍ୱାରା ବସ୍ତୁଗୁଡ଼ିକୁ ଚିହ୍ନି ହୁଏ ।

**ଆସ, ବସ୍ତୁକୁ ଚିହ୍ନିବା**

ପିଲାମାନେ ୪ ଦଳରେ ବିଭକ୍ତ ହେବେ । ପ୍ରତି ଦଳ ଶ୍ରେଣୀ ବାହାରକୁ ଯାଇ ବିଦ୍ୟାଳୟ ପରିବେଶରେ ମିଳୁଥିବା ଯେକୌଣସି ୪/୫ ଟି ବସ୍ତୁକୁ ଆଣିବେ । ପ୍ରତି ଦଳ ସେହି ବସ୍ତୁଗୁଡ଼ିକର ରଙ୍ଗ, କଠିନ ବା ନରମ, ହାତକୁ କିପରି ଲାଗୁଛି, ଏହି ସବୁ ଗୁଣକୁ ଭଲଭାବରେ ପର୍ଯ୍ୟବେକ୍ଷଣ କରି ପ୍ରତି ଦଳ ନିମ୍ନ ଟେବୁଲ୍‌ରେ ଲେଖିବେ ଓ ଶ୍ରେଣୀରେ ଦଳ ପରେ ଦଳ ଉପସ୍ଥାପନ କରିବେ ।

| | ବସ୍ତୁର ନାମ | ରଙ୍ଗ | ଚିକ୍‌କଣ | ଖଦଡ଼ିଆ | ଟାଣ | ନରମ |
|---|---|---|---|---|---|---|
| ୧ | | | | | | |
| ୨ | | | | | | |
| ୩ | | | | | | |

**ଅନ୍ୟ କାର୍ଯ୍ୟ**

- ପ୍ରତି ପିଲା ବିଦ୍ୟାଳୟ ପରିବେଶରେ ବ୍ୟବହାର ହେଉଥିବା ବିଭିନ୍ନ ଜିନିଷଗୁଡ଼ିକ କେଉଁ ମୂଳ ପଦାର୍ଥରୁ ତିଆରି ହୋଇଛି ଲେଖିବେ ଓ ଉପସ୍ଥାପନ କରିବେ ।

**ପ୍ରକଳ୍ପ**

ନିଜ ପଢ଼ାଘରେ, ରୋଷେଇ ଘରେ ଓ ଘରେ ଅନ୍ୟକାମରେ କେଉଁ ସବୁ ବସ୍ତୁ ବ୍ୟବହାର ହେଉଛି ସେ ସବୁର ତାଲିକା କରି ବସ୍ତୁର ଧର୍ମ ଅନୁସାରେ ଶ୍ରେଣୀ ବିଭାଗ କରିବେ ।



Digitized by PPRACHIN, SOA



# ହାତୀ ଖୋଜିଲା ପାଣି

**ସମୟ - ୨୧ ପିରିୟଡ୍**



ଖରାଦିନ, ହାତୀକୁ ଭାରି ଶୋଷ । ବାଟରେ ଆସୁ ଆସୁ କୂଅଟିଏ ଦେଖି ଶୁଣ୍ଢ ବୁଡ଼ାଇଲା । ହେଲେ ପାଣି ତ କେତେ ଦୂରରେ । କଇଁଛଟିଏ ଏହା ଦେଖି କହିଲା, ''ହାତୀ ଭାଇ ! ବାଲ୍‌ଟିଟିଏ ହେଲେ ସିନା ପାଣି ପିଇବୁ ।'' ବାଲ୍‌ଟି ଖୋଜି ହାତୀ ଆଗକୁ ଚାଲିଗଲା । ଦେଖିଲା, ଆଗରେ ପୋଖରୀଟିଏ ଅଛି । ପୋଖରୀ କୂଳରେ ଯାଇ ପହଞ୍ଚିଲା । ଦେଖିଲା ଲୋକମାନେ ମାଛ ଧରୁଛନ୍ତି । ଗୋଳିଆ ପାଣି ଦେଖି ଆଗକୁ ଚାଲିଲା । ବାଟରେ କୁମ୍ଭୀରକୁ ଦେଖି ବାଲ୍‌ଟି ମାଗିଲା । କୁମ୍ଭୀର ମୁଣ୍ଡ ହଲାଇ କହିଲା, ''ସମୁଦ୍ର ପାଖରେ ଥାଇ ପାଣି ପିଇବାକୁ ପାଉନୁ'' ? ସମୁଦ୍ରର ନାଁ ଶୁଣି ଚାଲିଲା ସେଠାକୁ । ଶୁଣ୍ଢରେ ଯେମିତି ପାଣି ଆଣି ପାଟିରେ ପୂରାଇଛି, ଥୁ ଥୁ କରି ଫୁଙ୍କି ଦେଲା । ପାଣି ନ ପିଇ ମନ ଦୁଃଖରେ ଫେରିଲା । ବାଟରେ ଏକ ନଈ ପଡ଼ିଲା । ହାତୀ ନଈ କୂଳରେ ଥିବା ନାଉରିଆକୁ ବାଲ୍‌ଟିଟିଏ ମାଗିଲା । ନାଉରିଆ କହିଲା, ''ଆରେ ନଈ କୂଳରେ ଛିଡ଼ା ହୋଇ ବାଲ୍‌ଟି କ'ଣ କରିବୁ ?'' ହାତୀ କହିଲା, ''ଆରେ ସତରେ ମୁଁ କେଡ଼େ ବୋକା ! ନଈ କୂଳରେ ଥାଇ ବାଲ୍‌ଟି ମୋର କ'ଣ ହେବ ?'' ଏହା ଭାବି ଶୁଣ୍ଢ ବୁଡ଼ାଇ ପାଣି ପିଇଲା ଓ ମନ ଖୁସିରେ ଚାଲିଲା ।



ସମୁଦ୍ର, ନଈ, ପୋଖରୀର ଜଳ ବାଷ୍ପ ହୋଇ ଉପରକୁ ଉଠିଯାଇ ଆକାଶରେ ମେଘ ଗଠନ କରେ । ସେହି ମେଘରୁ ବର୍ଷା ହୋଇ ବର୍ଷାଜଳ ପୃଥିବୀ ପୃଷ୍ଠରେ ପଡ଼େ । ବୃଷ୍ଟି ଜଳର କେତେକ ଅଂଶ ମାଟି ତଳକୁ ଚାଲିଯାଇ ଜମା ହୋଇ ରହେ । ବାକି ଅଂଶ ନଦୀ, ନାଳକୁ ଯାଇ ସମୁଦ୍ରରେ ପଡ଼େ ଓ ପୋଖରୀ ଗାଡ଼ିଆରେ ଜମା ହୋଇ ରହେ ।







କୂଅ ବା ନଳକୂଅ ଦେଇ ମାଟି ତଳେ ଥିବା ଜଳ ଆମେ ସଂଗ୍ରହ କରିଥାଉ । ମାଟିତଳେ ଥିବା ଜଳ ଯେତେବେଳେ ଆପେ ଆପେ ଭୂପୃଷ୍ଠରୁ ଫାଟ ବାଟେ ଉପରକୁ ଉଠି ଆସି ବୋହିଯାଏ, ଏହାକୁ ଝରଣା କୁହାଯାଏ । ଏହି ଝରଣା ଜଳକୁ ମଧ୍ୟ ଆମେ ସଂଗ୍ରହ କରି ଥାଉ ।






Digitized by PPRACHIN, SOA

## ଅଭ୍ୟାସ

୧. ଗରମ ଭାତ ହାଣ୍ଡି ଓ ଚା' କେଟ୍‌ଲିକୁ କେବେ ଲକ୍ଷ୍ୟ କରିଛ ? କ'ଣ ଲକ୍ଷ୍ୟ କରିଛ ନିଜ ଅନୁଭୂତିରୁ ଲେଖ ।

୨. ପ୍ରତି ଦିନ ତୁମେ ଜଳକୁ କେଉଁ କେଉଁ କାମରେ ଲଗାଅ ତା'ର ତାଲିକା କର ।

________________________________________

________________________________________

୩.



କହ ଭାଇ କହ, ଜଣ ଜଣ କରି କହ
କେଉଁଠୁ ମିଳୁଛି କହ (ପାଣି), କେଉଁଠୁ ମିଳୁଛି କହ
କହି ପାରିବ ଯିଏ, ସୁନା ପିଲାଟି ସିଏ ।



ହୀରାକୁଦ ନଦୀବନ୍ଧ ଯୋଜନା

ବିଜୁଳି କେଉଁଥିରୁ ଉତ୍ପନ୍ନ ହେଉଛି ? ଠିକ୍ ଶବ୍ଦରେ ଗୋଲ ବୁଲାଅ ।

ପାଣି, କାଠ, ପଥର, କୋଇଲା, ଲୁହା, ଗ୍ୟାସ ।

| ଜଳର ସ୍ରୋତ ସାହାଯ୍ୟରେ ଯନ୍ତ୍ର ଘୂରାଇ ସେଥିରୁ ବିଜୁଳି ଉତ୍ପାଦନ କରାଯାଏ । କୋଇଲା ଓ ଗ୍ୟାସରୁ ମଧ୍ୟ ବିଜୁଳି ଉତ୍ପାଦନ ହୁଏ । |
|---|

୪






୫

ଜଳ ମଧ୍ୟରେ କେଉଁ କେଉଁ ଉଦ୍ଭିଦ ଓ ପ୍ରାଣୀମାନେ ବାସ କରନ୍ତି ତା'ର ଏକ ତାଲିକା କର ।

| ପ୍ରାଣୀ | ଉଦ୍ଭିଦ |
|---|---|
| * ________ | * ________ |
| * ________ | * ________ |
| * ________ | * ________ |
| * ________ | * ________ |
| * ________ | * ________ |
| * ________ | * ________ |

ଜଳରେ ମାଛ, କୁମ୍ଭୀର, ଗେଣ୍ଡା, ଶାମୁକା, ଜଳହସ୍ତୀ ପ୍ରଭୃତି ପ୍ରାଣୀ ବାସ କରନ୍ତି । କଇଁ, ପଦ୍ମ, ଚିଙ୍ଗୁଡ଼ିଆ ଦଳ ଭଳି କେତେକ ଉଦ୍ଭିଦ ସ୍ଥଳ ଭାଗରେ ବଞ୍ଚିପାରିବେ ନାହିଁ ।



Digitized by PPRACHIN, SOA

୬. ଜଳରେ କ'ଣ ମିଳାଏ ନାହିଁ ବାଛ ।

| | |
|---|---|
| ଚିନି | ଚଣା |
| ମଟର | ଲୁଣ |
| ଫିଟିକିରି | କାଠଗୁଣ୍ଡ |
| ପଥର | ମିଶ୍ରି |
| କୋଇଲା | ଚୂନ |
| ସୋଡ଼ା | ଆଇସକ୍ରିମ୍ |

୭. କ'ଣ ହୁଏ ?




୮. କ'ଣ ହେବ ଖାଲି ଘରେ ଲେଖ ।




୯. କ'ଣ ହେବ କହ ।




କୂଅ ଜଳ ଦୂଷିତ ହୁଏ କିପରି ।




୧୦. ଆଉ କେଉଁ କାରଣରୁ ପୋଖରୀ ଓ କୂଅ ଜଳ ଦୂଷିତ ହୁଏ କହ ।

ସାଧାରଣତଃ କୂଅ, ନଳକୂଅ, ପୋଖରୀ ଓ ନଦୀ ଜଳ ଆମେ ବ୍ୟବହାର କରିଥାଉ । ଏଣୁ ଏଗୁଡ଼ିକର ଜଳ ଦୂଷିତ ନ ହେବା ପାଇଁ ଆମେ ସମସ୍ତେ ସଚେତନ ହେବା ଉଚିତ୍ । କାରଣ ଜଳର ଅନ୍ୟ ନାମ ଜୀବନ ।



Digitized by PPRACHIN, SOA

**ତୁମ ପାଇଁ କାମ :**

୧. କ'ଣ ହୁଏ ?

ଜଳ ଅତି ଥଣ୍ଡା ହେଲେ ________ ଗରମ ହେଲେ ________ ଗରମ ହୋଇ ଥଣ୍ଡାହେଲେ ________

୨. ଜଳର କେତୋଟି ଅବସ୍ଥା ଅଛି ଓ କ'ଣ କ'ଣ ?

୩. ବାକ୍ସରେ ଦିଆଯାଇଥିବା ଶବ୍ଦକୁ ଲଗାଇ ପୂରଣ କର ।

| ବାଷ୍ପ, ଗ୍ୟାସ, ବରଫ, ଜଳ, କଠିନ, ଗରମ |
|---|

(କ) ଯେତେବେଳେ ଜଳ ଗରମ ହୁଏ, ଏହା ________ ରେ ପରିଣତ ହୁଏ ।

(ଖ) ଜଳ ବାଷ୍ପ ହୋଇ ________ ହେଲେ ଜଳ ହୁଏ ।

(ଗ) ଅତି ଥଣ୍ଡା ହେଲେ ଜଳ ________ ହୁଏ ।

(ଘ) ବରଫ ଗରମ ହେଲେ ________ ହୁଏ ।

୪. ରକ୍ତରେ ଜଳ ନଥିଲେ କ'ଣ ହେବ, ଲେଖ ।



୫. ବର୍ଷାଜଳ କେଉଁଠିକୁ ଯାଏ ?



୬. ଆମେ ଜଳ କେଉଁଠୁ ପାଉ ?




୭. କେଉଁ ଜଳ କିପରି ଦୂଷିତ ହୁଏ ?




୮. କିପରି ତିଆରି କରିବ ?

ଲେମ୍ବୁ ସରବତ ________

ବେଲ ପଣା ________

ତରଭୁଜ ସରବତ ________

ଆମ୍ବ ସରବତ ________

୯. କ'ଣ କଲେ ଜଳ ଦୂଷିତ ହେବ ନାହିଁ ତା'ର ଏକ ତାଳିକା ପ୍ରସ୍ତୁତ କର ।



୧୦.



ଦୂଷିତ ଜଳ ପିଇଲେ କ'ଣ ହୁଏ ଚିତ୍ର ଦେଖି ଲେଖ ।

________

________

________



Digitized by PPRACHIN, SOA

**କ'ଣ ଶିଖିବେ**

- ଜଳର ବିଭିନ୍ନ ଉତ୍ସ ସମ୍ବନ୍ଧରେ ଜାଣିବେ ।
- ଜଳର ବିଭିନ୍ନ ସ୍ଥାନୀୟ ଉତ୍ସ ଚିହ୍ନଟ କରିବେ ।
- ଜଳର ବିଭିନ୍ନ ବ୍ୟବହାର ବର୍ଣ୍ଣନା କରିବେ ।
- ଜଳ କିପରି ଦୂଷିତ ହୁଏ, ତାହା ଜାଣିବେ ।

**ସୂଚନା**

ଜଳର ଆବଶ୍ୟକତା- ପୃଥିବୀ ପୃଷ୍ଠରେ ଜଳର ପରିମାଣ, ଶରୀରତତ୍ତ୍ୱ ସହ ଜଳର ସଂପର୍କ, ଦୈନନ୍ଦିନ ଜୀବନରେ ଜଳର ବ୍ୟବହାର, ଜଳର ବିଭିନ୍ନ ଉତ୍ସ, ବ୍ୟବହାର ଯୋଗ୍ୟ ଜଳର ଉତ୍ସ, ଜଳ କିପରି ଦୂଷିତ ହୁଏ ଓ ଏହାର ପ୍ରତିକାର ବ୍ୟବସ୍ଥା, ଜଳ ସଂରକ୍ଷଣ ପ୍ରତି ସଚେତନତା ବୃଦ୍ଧି ପ୍ରଭୃତି ବିଷୟକୁ ପ୍ରସ୍ତାବିତ ପାଠରେ ସନ୍ନିହିତ କରାଯାଇଛି ।

**ପ୍ରସ୍ତୁତି**

- ପୃଥିବୀର ତିନିଭାଗ ଜଳ ଓ ଏକ ଭାଗ ସ୍ଥଳ ବୋଲି ଚିତ୍ର/ମାନଚିତ୍ର ସାହାଯ୍ୟରେ ପିଲାମାନଙ୍କୁ ଦେଖାନ୍ତୁ ।
- ଭିନ୍ନ ଭିନ୍ନ କାଚଗ୍ଲାସରେ ସ୍ୱଚ୍ଛ, ଗୋଳିଆ ପାଣିର ନମୁନା କରନ୍ତୁ ।
- ସକାଳୁ ସନ୍ଧ୍ୟା ସମୟ ମଧ୍ୟରେ ପିଲାମାନେ ପାଣିକୁ କେଉଁ କେଉଁ କାମରେ ବ୍ୟବହାର କରନ୍ତି ସେ ବିଷୟରେ ପ୍ରତ୍ୟେକ ପିଲା ଗୋଟିଏ ଲେଖାଏଁ ବାକ୍ୟ କହିବେ ।
- ପିଲାମାନେ ଗୋଲାକାରରେ "ଘୋ ଘୋ,ରାଣୀ- ପାଦେ ପାଦେ ପାଣି" ଖେଳ ଖେଳିବେ ।

**କାମ**

- ଜଳର ବିଭିନ୍ନ ବ୍ୟବହାର କେଉଁ କେଉଁ କ୍ଷେତ୍ରରେ କରାଯାଏ ଆଲୋଚନା କରନ୍ତୁ ।

**ଅଧିକ ତଥ୍ୟ**

ପ୍ରକୃତିରେ ଜଳ ତିନି ପ୍ରକାରେ ଉପଲବ୍ଧ ହୁଏ । ଯଥା- ଭୂ ପୃଷ୍ଠରୁ, ଭୂ ଗର୍ଭରୁ ଓ ବୃଷ୍ଟିପାତରୁ । ବୃଷ୍ଟି ଜଳ ଓ ଜଳଚକ୍ର ପାଇଁ ଜଙ୍ଗଲ ଓ ଗଛଲତାର ଭୂମିକା ବେଶି, ଜଳ ହିଁ ଜୀବନ । ଶରୀରରେ ୭୦ ଭାଗ ଜଳ ଥାଏ ଓ ରକ୍ତ ସଞ୍ଚାଳନରେ ଜଳ ହିଁ ସାହାଯ୍ୟ କରିଥାଏ ।

**ଆଲୋଚନା**

- ପିଲାମାନେ ଗୋଲାକାରରେ ବସି ଜଣକ ପରେ ଜଣେ ବର୍ଷାଦିନର ପରିବେଶରେ ସଂଗଠିତ ହେଉଥିବା ଘଟଣାଗୁଡ଼ିକୁ କହିବେ । ଏସବୁ ଅବସ୍ଥା/ଘଟଣା କାହିଁକି ହେଲା ଆଲୋଚନା ହେବ ।

**କିଛି ଆଲୋଚନା** **କାରଣ ନିରୂପଣ** **ତାଲିକା ପ୍ରସ୍ତୁତି**

ପିଲାମାନଙ୍କୁ ୪ଟି ଦଳରେ ଭାଗ କରାଯିବ । ପ୍ରତି ଦଳ

- ଜଳର ଦୈନନ୍ଦିନ ବ୍ୟବହାରର ତାଲିକା କରିବେ ।
- ନିଜ ଅଞ୍ଚଳରେ ଜଳର ବିଭିନ୍ନ ଉତ୍ସ ଓ ପାନୀୟ ଉପଯୋଗୀ ଜଳକୁ ଚିହ୍ନଟ କରି ତାଲିକା କରିବେ ।
- ଜଳ କେଉଁ କାରଣରୁ ଦୂଷିତ ହୁଏ, ତା'ର ତାଲିକା କରିବେ ।
- କେଉଁ, କେଉଁ ପଦକ୍ଷେପ ନେଲେ ଜଳ ଦୂଷିତ ହେବ ନାହିଁ, ତା'ର ଏକ ତାଲିକା କରିବେ ।
- ପ୍ରତ୍ୟେକ ପିଲା ବିଭିନ୍ନ ସ୍ଥାନରୁ ଜଳ ଏକ ଛୋଟ ବୋତଲରେ ସଂଗ୍ରହ କରି ଆଣିବେ । ନିଜ ପରିବେଶରେ କେଉଁ, କେଉଁ ଉତ୍ସରେ ଜଳ ରହିଛି ତା'ର ତାଲିକା କରିବେ । ଶ୍ରେଣୀ କକ୍ଷରେ ସଂଗୃହୀତ ଜଳକୁ ସ୍ୱଚ୍ଛ, ଅସ୍ୱଚ୍ଛ,ଗୋଳିଆ ଇତ୍ୟାଦି ବିଭିନ୍ନ ଭାଗରେ ବର୍ଗୀକରଣ କରିବେ ।



Digitized by PPRACHIN, SOA

☞ ପରିବେଶରେ ଜଳ କେଉଁଠାରୁ ସଂଗ୍ରହ କରାଯାଏ, ପିଲାମାନଙ୍କ ମଧ୍ୟରେ ଆଲୋଚନା କରନ୍ତୁ । (ଏଠାରେ ଶିକ୍ଷକ କୂପ, ନଳକୂପ, ପୋଖରୀ, ନଦୀ ଇତ୍ୟାଦିର ଆଞ୍ଚଳିକ ଅବସ୍ଥିତି ଅନୁଯାୟୀ ଉପସ୍ଥାପନା କରିବେ ।)

☞ ଜଳ କିପରି ଦୂଷିତ ହୁଏ, ନିଜ ପରିବେଶର ଅନୁଭୂତିକୁ ନେଇ ଆଲୋଚନା କରନ୍ତୁ ।

☞ 'ହାତୀ ଖୋଜିଲା ପାଣି' ଗପଟିକୁ ପିଲାଙ୍କୁ ଶୁଣାନ୍ତୁ । ପ୍ରାସଙ୍ଗିକ ଗଳ୍ପରେ ହାତୀ କିପରି ଜଳର ବିଶୁଦ୍ଧତା ନିରୂପଣ କରିବା ପାଇଁ ପୋଖରୀର ଗୋଳିଆ ପାଣିକୁ ଅଗ୍ରାହ୍ୟ କରି ନଈର ପରିଷ୍କାର ପାଣି ପିଇବା ପାଇଁ ନିଷ୍ପତ୍ତି ନେଲା ଏବଂ ଏହା ଶରୀର ତତ୍ତ୍ୱ ଉପରେ କିପରି ପ୍ରଭାବ ପକାଇବ ଶିକ୍ଷକ ପିଲାମାନଙ୍କ ମଧ୍ୟରେ ଆଲୋଚନା କରନ୍ତୁ ।

☞ ପ୍ରଶ୍ନାବଳୀର ସମସ୍ତ ପ୍ରଶ୍ନ ପିଲାମାନଙ୍କ ବ୍ୟକ୍ତିଗତ କାର୍ଯ୍ୟ ହୋଇଥିବା ଯୋଗୁଁ କାର୍ଯ୍ୟପତ୍ର ପୂରଣ ସମୟରେ ପିଲାଙ୍କ ବ୍ୟକ୍ତିଗତ ଅସୁବିଧା ପ୍ରତି ସଜାଗ ରହନ୍ତୁ ।

☞ ଆବଶ୍ୟକ ସ୍ଥଳେ ପିଲାମାନଙ୍କୁ ଦଳଗତ ଆଲୋଚନା ପାଇଁ ଯଥେଷ୍ଟ ସୁଯୋଗ ଦିଅନ୍ତୁ ।

**ଟିକେ ଚିନ୍ତା କରିବା**

ପୃଥିବୀ ପୃଷ୍ଠରେ ଜଳ ନଥିଲେ କ'ଣ ଅସୁବିଧା ହୁଅନ୍ତା, ଜଣ ଜଣ କରି ଗୋଟିଏ ଲେଖାଏଁ ବାକ୍ୟ କହିବେ ।

**ପର୍ଯ୍ୟବେକ୍ଷଣ** ପାଣିଯାଏ କୁଆଡ଼େ ?

☞ ଶ୍ରେଣୀ କକ୍ଷରେ କାଚ ଗିଲାସରେ ପାଣି ଭର୍ତ୍ତି କରି ଶ୍ରେଣୀ କୋଠରୀରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ରଖିବେ । ପ୍ରତି ଦିନ ଲକ୍ଷ୍ୟ କରିବେ । ପାଣିର ପରିମାଣରେ କ'ଣ ପାର୍ଥକ୍ୟ ଦେଖିବାକୁ ମିଳିବ ? କାହିଁକି ?

☞ ପୋଖରୀର କିଛି ପାଣିକୁ ଷ୍ଟୋଭରେ ଗରମ କରି ୧୦/୧୫ମିନିଟ୍ ପରେ ଦେଖିବେ, କ'ଣ ହେଲା ? କାହିଁକି ?

ସାମୂହିକ ଗୀତ

ଦୋଳି ଖେଳଇ ପାଣିରେ ଭାଇ
 ପାଣି ଖେଳଇ ଦୋଳି
ତଳୁ ଉପର, ଉପରୁ ତଳ
 ଦେଖାଇ କେତେ ଠାଣି ।
ଖରା ତେଜରେ ଦରିଆ ବୁକେ
 ଯାଏ ସେ ଆଗ ତାତି ।
ବାଷ୍ପ ହୋଇ ଖେଳି ଖେଳିକା
 ଆକାଶେ ଯାଏ ମାତି ।
ତୁହାକୁ ତୁହା ହେମାଳ ବାଆ
 ଦେହରେ ତା'ର ବାଜି
ପାଲଟି ଯାଏ ଜଳ କଣିକା
 ପବନ ସାଥେ ମିଶି ।
ଗୋଟିକି ଗୋଟି ଜଳ କଣିକା



Digitized by PPRACHIN, SOA

ମିଶିଲେ ହୁଏ ମେଘ,
ଟୋପାକୁ ଟୋପା ବରଷା ହୋଇ,
ଖସେ ତଳକୁ ଦେଖ ।
ପାଣି ଖେଳଇ ଦୋଳିରେ ଭାଇ
ଦୋଳି ଖେଳଇ ପାଣି,
ବାଷ୍ପ କେବେ, ବର୍ଷା କେବେ,
ଦେଖାଇ କେତେ ଠାଣି ।

**ପ୍ରକଳ୍ପ**

- ପିଲାମାନେ ସ୍ଥାନୀୟ ପୋଖରୀ, କୂପ ବା ନଈ ପାଖକୁ ଯାଇ ଲୋକେ ଜଳର କେଉଁ ସବୁ ବ୍ୟବହାର କରୁଛନ୍ତି ପର୍ଯ୍ୟବେକ୍ଷଣ କରି ଲିପିବଦ୍ଧ କରିବେ । ଏହି ପର୍ଯ୍ୟବେକ୍ଷଣରେ ପୋଖରୀ, କୂପ ବା ନଈରେ ଲୋକମାନେ ବ୍ୟବହାର କରୁଥିବା ଜଳ କିପରି ଦୂଷିତ ହୁଏ, ସେହି ମତାମତ ନିଜେ ଦେବା ପାଇଁ ସକ୍ଷମ ହେବେ ।
- ପିଲାମାନେ ନିଜ ଘରେ ଓ ପାଖ ପଡ଼ିଶା ଘରେ ଦୂଷିତ ଜଳକୁ କିପରି ବିଶୋଧନ/ ପରିଷ୍କାର କରାଯାଉଛି ତାହା ପଚାରି ବୁଝିବେ ଓ ଲିପିବଦ୍ଧ କରିବେ ।
- ଶ୍ରେଣୀରେ/ବିଦ୍ୟାଳୟରେ ପିଇବା ପାଣି ସଂଗ୍ରହ କରି ମାଠିଆରେ ଢ଼ାଙ୍କୁଣୀ ଘୋଡ଼ାଇ ରଖିବେ ଓ ଲମ୍ବନାଡ଼ ଯୁକ୍ତ ମଗ୍ ଦ୍ୱାରା ମାଠିଆରୁ ପାଣି ଆଣି ବ୍ୟବହାର କରିବା ପାଇଁ ପିଲାମାନଙ୍କ ଦ୍ୱାରା ଅଭ୍ୟାସ କରାଇବେ ।
- ଅପରିଷ୍କାର ଜଳ ବ୍ୟବହାର କଲେ କି କି କ୍ଷତି ହୁଏ, ତା'ର ତାଲିକା ପ୍ରସ୍ତୁତ କରିବେ ।
- ଦୂଷିତ ଜଳକୁ କିପରି ବିଶୋଧନ କରାଯାଏ ଓ ପାନୀୟ ଜଳର ସଂଗ୍ରହ, ସଂରକ୍ଷଣ ଓ ବ୍ୟବହାରରେ କି କି ସାବଧାନତା ଅବଲମ୍ବନ କରାଯିବ ତା'ର ବିବରଣୀ ପ୍ରସ୍ତୁତ କରିବେ ।

## ପଞ୍ଚମ ଏକକ ପରୀକ୍ଷଣ



Digitized by PPRACHIN, SOA

## ପୃଥିବୀର ଜନ୍ମ

# ପୃଥିବୀ ଓ ସୂର୍ଯ୍ୟ

**ସମୟ - ୧୦ ପିରିୟଡ୍**

ଦୀପା ଓ ମଣ୍ଟୁ ମାଉସୀ ଘରକୁ ଯାଇଥିଲେ ।
ସେଦିନ ଦୀପାବଳି ଲଡୁ ଖାଇଥିଲେ ।



























Digitized by PPRACHIN, SOA

# ପୃଥିବୀ ଓ ସୂର୍ଯ୍ୟ





ଉପର ସବୁ ଚିତ୍ରରେ ଗୋଟିଏ କାମ ହେଉଛି । ସେହି କାମଟି କ'ଣ ?






ଏଥିରୁ ତୁମେ କ'ଣ ଜାଣିପାରୁଛ ?

ଚଳନ୍ତା ରେଳଗାଡ଼ି ବା ମଟରରେ ବସି ଗଲାବେଳେ ରାସ୍ତା କଡ଼ରେ ଥିବା ଗଛଲତା ଓ ଘର ସବୁ ପଛକୁ ଦୌଡୁଥିବା ପରି ଜଣା ପଡ଼ନ୍ତି । କିନ୍ତୁ ପ୍ରକୃତରେ ଗଛଲତା ଓ ଘର ସବୁ ସ୍ଥିର ଥାଏ । ଆମେ ଗତି କରିଥାଉ । ସେହିପରି ପ୍ରକୃତରେ ସୂର୍ଯ୍ୟ ଚାରିପଟେ ପୃଥିବୀ ଘୂରିଥାଏ । କିନ୍ତୁ ଆମକୁ ଲାଗେ ସୂର୍ଯ୍ୟ ଘୂରୁଛି ।

■ କିଏ ଘୂରୁଛି ?



■ ସୂର୍ଯ୍ୟ ଚାରିପଟରେ → ____________________

ପୃଥିବୀ ଚାରିପଟେ → ____________________

| ପୃଥିବୀ ଗୋଟିଏ ଗ୍ରହ । ଚନ୍ଦ୍ର ତା'ର ଗୋଟିଏ ଉପଗ୍ରହ ।<br>ପୃଥିବୀର ନିଜର ଆଲୋକ ନାହିଁ । ଏହା ସୂର୍ଯ୍ୟ ଆଲୋକରେ ଆଲୋକିତ । ଚନ୍ଦ୍ର ମଧ୍ୟ ସୂର୍ଯ୍ୟର ଆଲୋକରେ ଆଲୋକିତ ହୋଇଥାଏ । |
|---|

ସୂର୍ଯ୍ୟ ଥିବାରୁ ଆମର କ'ଣ ସବୁ ସୁବିଧା ହୁଏ ?



■ ଆକାଶରେ କ'ଣ କ'ଣ ଦେଖାଯାଏ ?

ଦିନରେ → ____________
→ ____________
→ ____________

ରାତିରେ → ____________
→ ____________
→ ____________





Digitized by PPRACHIN, SOA

■ **କାହିଁକି ?**

ଦିନରେ ତାରାମାନେ ଆକାଶରେ ଦେଖାଯାଆନ୍ତି ନାହିଁ । ..........

ରାତିରେ ତାରାମାନେ ମିଞ୍ଜି ମିଞ୍ଜି ଆଲୋକ ଦେଇଥାନ୍ତି । ..........




■ ଚିତ୍ର ଦେଖି କହ ।

■ ପୃଥିବୀ ପରି ଆଉ କେତୋଟି ଗ୍ରହ ସୂର୍ଯ୍ୟ ଚାରି ପାଖେ ବୁଲୁଛନ୍ତି ?

..........

■ ଦୂରତା କ୍ରମେ ଗ୍ରହଗୁଡ଼ିକର ନାମ: —

..........

| ସୂର୍ଯ୍ୟ ଓ ଏହାର ନଅଗୋଟି ଗ୍ରହ ଏବଂ ଗ୍ରହମାନଙ୍କର ଉପଗ୍ରହକୁ ନେଇ ସୌରଜଗତ ଗଠିତ । |
|---|










ନଟୁ ଯେପରି ନିଜ ଚାରି ପଟରେ ଘୂରେ ପୃଥିବୀ ମଧ୍ୟ ସେହିପରି ନିଜ ଅକ୍ଷ ଚାରିପଟରେ ଘୂରେ । ଥରେ ଘୂରି ଆସିବାକୁ ୨୪ ଘଣ୍ଟା ସମୟ ଲାଗେ ।



▪ ଚିତ୍ରରେ କେତେ ଅଂଶ ଆଲୋକିତ ହେଉଛି ଆଉ କେତେ ଅଂଶ ଅନ୍ଧାର ଦେଖାଯାଉଛି ।

..........

▪ **କ'ଣ ହୁଏ ?**

ସୂର୍ଯ୍ୟ ସମ୍ମୁଖରେ ପୃଥିବୀର ଯେଉଁ ଅଂଶ ଥାଏ, ସେହି ଅଞ୍ଚଳରେ ..........

ସୂର୍ଯ୍ୟ ଆଡ଼କୁ ପୃଥିବୀର ଯେଉଁ ଅଂଶ ନଥାଏ, ସେହି ଅଞ୍ଚଳରେ ..........

| ପୃଥିବୀ ନିଜ ଅକ୍ଷ ଚାରିପଟେ ଘୂରିବା ସଙ୍ଗେ ସଙ୍ଗେ ସୂର୍ଯ୍ୟ ଚାରିପଟରେ ଘୂରୁଛି ।<br>ଏଭଳି ଘୂରିବା ଯୋଗୁଁ ଦିନ ରାତି ଓ ଋତୁ ପରିବର୍ତ୍ତନ ହୁଏ । |
|---|



Digitized by PPRACHIN, SOA

## ଅଭ୍ୟାସ

୧. ନାମ ଲେଖ ।

(କ) ଏକ ଜ୍ୱଳନ୍ତ ଉତ୍ତପ୍ତ ପିଣ୍ଡ ____________

(ଖ) ଗୋଟିଏ ଗ୍ରହର ନାମ ଓ ଆକାର ____________

(ଗ) ପୃଥିବୀର ଉପଗ୍ରହ ____________

(ଘ) ରାତିରେ ମିଞ୍ଜି ମିଞ୍ଜି ଆଲୋକ ଦିଏ ____________

୨. ସୂର୍ଯ୍ୟଯୋଗୁଁ କ'ଣ କ'ଣ ହୁଏ ଲେଖ ।






୩. ସୂର୍ଯ୍ୟଙ୍କଠାରୁ ଦୂରତା ଅନୁସାରେ ଲେଖ ।

ପୃଥିବୀ ମଙ୍ଗଳ ଶୁକ୍ର ପ୍ଲୁଟୋ ନେପଚୁନ୍

ବୃହସ୍ପତି ବୁଧ ଶନି ୟୁରେନ୍ସ

____________

____________

୪. କ'ଣ ହୋଇଥାନ୍ତା ?

(କ) ପୃଥିବୀର ଆକାର ଗୋଲାକାର ହୋଇ ନଥିଲେ । ____________

(ଖ) ପୃଥିବୀ ନିଜ ଅକ୍ଷ ଚାରିପଟେ ନ ଘୂରୁଥିଲେ । ____________

(ଗ) ସୂର୍ଯ୍ୟଙ୍କ ଠାରୁ ଆଲୋକ ପାଇ ନଥିଲେ । ____________

୫. ଆକାଶରେ କ'ଣ ଦେଖାଯାଏ ?

ଦିନରେ ____________

ରାତିରେ ____________

୬. କାହିଁକି ?

ଦିନରେ ତାରାମାନେ ଦେଖାଯାଆନ୍ତି ନାହିଁ । ____________

ରାତିରେ ତାରାମାନେ ମିଞ୍ଜି ମିଞ୍ଜି ଆଲୋକ ଦେଇଥାନ୍ତି । ____________



Digitized by PPRACHIN, SOA

**କ'ଣ ଶିଖିବେ**

- ପୃଥିବୀ ଓ ସୂର୍ଯ୍ୟ ମଧ୍ୟରେ ସଂପର୍କ ଏବଂ ଏହାର କ୍ରିୟା ପ୍ରତିକ୍ରିୟାକୁ ଜାଣିବେ ।
- ପୃଥିବୀର ଆକାର ବର୍ଣ୍ଣନା କରିବେ ।

**ସୂଚନା**

ପୃଥିବୀର ଜନ୍ମ ବିଷୟଟିକୁ ବହିରେ ଛବିଳ ଏକାଙ୍କିକା (କାର୍ଟୁନ୍) ମାଧ୍ୟମରେ ଉପସ୍ଥାପନ କରାଯାଇଛି । ସୂର୍ଯ୍ୟ ଓ ଏହାର ନଅଟି ଗ୍ରହକୁ ନେଇ ସୌର ଜଗତ ଗଠିତ । ସୂର୍ଯ୍ୟଠାରୁ ଆମେ କ'ଣ ପାଉ ଏବଂ ପୃଥିବୀର ଘୂର୍ଣ୍ଣନ ଓ ପରିକ୍ରମଣ ବିଷୟକୁ କିଛି ଶିକ୍ଷଣକାର୍ଯ୍ୟ ସହିତ ଚିତ୍ରର ସାହାଯ୍ୟ ନେଇ ଉପସ୍ଥାପନ କରାଯାଇଛି ।

**ପ୍ରସ୍ତୁତି**

- ପୃଥିବୀର ଜନ୍ମ ସଂପର୍କିତ ବିଭିନ୍ନ ମତବାଦକୁ ପିଲାମାନଙ୍କୁ ଗପ ଆକାରରେ କହନ୍ତୁ ।
- ପିଲା ଚକା ଚକା ଭଉଁରୀ, ମାମୁଁଘର ଚଉଁରୀ ଖେଳ ଖେଳିବେ ।

**କାମ**

- ଛବିଳ କାର୍ଟୁନ୍‌କୁ ପିଲାଙ୍କ ଦ୍ୱାରା ପଠନ ଓ ପରେ ଅଭିନୟ କରାନ୍ତୁ ।
- ଅନ୍ଧାରଘରେ ବଲ୍ ଓ ଟର୍ଚ୍ଚ/ ମହମବତି ନେଇ ଦିନରାତି ହେବା ପରୀକ୍ଷା କରିପାରିବେ ।
- ସୂର୍ଯ୍ୟ, ପୃଥିବୀ ଓ ଚନ୍ଦ୍ରର ଅବସ୍ଥିତି ନେଇ ଚିତ୍ର ପ୍ରସ୍ତୁତ କରି ରଖିବେ ।
- ସୂର୍ଯ୍ୟ ଚାରିପଟେ ନଅଟି ଗ୍ରହର ଚିତ୍ର ପ୍ରସ୍ତୁତ କରିଥିବେ ।
- ନିଜ ଘର ଚାରି ପାଖରେ, ଲଣ୍ଠନ ପାଖରେ, ନିଆଁ ଜାଳିବା ପାଖରେ ଗରମ ଲାଗେ, ନିଆଁ ଠାରୁ ଦୂରକୁ ଦୂରକୁ ଗଲେ ଗରମ କମି କମି ଯାଇ ଥଣ୍ଡା ଲାଗେ ବୋଲି ପିଲା ଉପଲବ୍ଧି କରିବେ ।

**ଉପକରଣ** : ମହମବତି, ଦିଆସିଲି, ବଲ୍, ଟର୍ଚ୍ଚ

**ଅଧିକ ତଥ୍ୟ**

ଚନ୍ଦ୍ର ହେଉଛି ପୃଥିବୀର ଏକମାତ୍ର ପ୍ରାକୃତିକ ଉପଗ୍ରହ । ଆଜିକାଲି ବହୁତ ମନୁଷ୍ୟକୃତ ଉପଗ୍ରହ ପୃଥିବୀ ପୃଷ୍ଠକୁ ଛଡ଼ାଗଲାଣି । ଚନ୍ଦ୍ରର ପୃଥିବୀ ଚାରିପଟେ ଘୂର୍ଣ୍ଣନ ଯୋଗୁଁ ପୂର୍ଣ୍ଣିମା ଓ ଅମାବାସ୍ୟା ହୁଏ । ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀର ଅବସ୍ଥିତି ନେଇ ସୂର୍ଯ୍ୟ ପରାଗ ଓ ଚନ୍ଦ୍ରଗ୍ରହଣ ହୋଇଥାଏ ଏବଂ ସୂର୍ଯ୍ୟଙ୍କ ସ୍ଥିତି ଓ ପୃଥିବୀର ଅବସ୍ଥିତିକୁ ନେଇ ଋତୁ ପରିବର୍ତ୍ତନ ହୋଇଥାଏ ।

**ଦଳଗତ କାର୍ଯ୍ୟ**

ପିଲାମାନଙ୍କ ମଧ୍ୟରୁ ୧୦ଜଣ ପିଲାଙ୍କୁ ପଡ଼ିଆକୁ ନେଇ ମଝିରେ ସୂର୍ଯ୍ୟ ଓ ତା'ର ଚାରିପଟେ ନଅଟି ପିଲାଙ୍କୁ ଗ୍ରହର ନାମ ଦେଇ ଗ୍ରହର ଅବସ୍ଥିତି ଅନୁସାରେ ଛିଡ଼ା କରାଇ ଶିକ୍ଷଣ କାର୍ଯ୍ୟ କରିବେ । ପିଲାମାନେ ଗ୍ରହଗୁଡ଼ିକର ନାମ ଲେଖାଥିବା କାଗଜ ଖଣ୍ଡକୁ ବେକରେ ଲଗାଇଥିବେ । ସୂର୍ଯ୍ୟ ହୋଇଥିବା ପିଲା ଦଉଡ଼ିର ଗୋଟିଏ ପାଖ ଧରିବ । ଗ୍ରହ ହୋଇଥିବା ପିଲା ଜଣ ଜଣ କରି (ଅଲଗା ଅଲଗା ଦୈର୍ଘ୍ୟ ବିଶିଷ୍ଟ) ଦଉଡ଼ିର ଅନ୍ୟ ପାଖ ଧରି ଚାରିପଟେ ଘୂରିବେ । ଗ୍ରହ ଘୂରିଥିବା ପଥକୁ ଚୂନ ବା ପାଉଁଶରେ ଚିହ୍ନଟ କରିବେ । ତା'ପରେ ସୂର୍ଯ୍ୟ ମଝିରେ ସ୍ଥିର ରହି, ତା' ଚାରିପଟେ ସମସ୍ତ ଗ୍ରହ ଏକାଥରେ ନିଜ ନିଜ ପଥରେ ଘୂରିବେ । ପରସ୍ପର ସମ୍ଭାବନା ଅଛି କି ନାହିଁ ଜାଣିବେ ।

**ପ୍ରକଳ୍ପ**

- ଅନ୍ଧାର ଘରେ ଓ ସୂର୍ଯ୍ୟକିରଣ ପଡୁଥିବା ସ୍ଥାନରେ, ମହମବତି ଜଳୁଥିବା ସମୟରେ ଅନୁଧ୍ୟାନ କରିବେ । ପାର୍ଥକ୍ୟ କ'ଣ ଓ କାହିଁକି ତାହା ଆଲୋଚନା କରି ଲିପିବଦ୍ଧ କରିବେ ।
- ସୂର୍ଯ୍ୟ ଓ ତା'ର ନଅଟି ଗ୍ରହକୁ ନେଇ ସୌର ଜଗତର ଏକ ମଡେଲ କରିବେ ।

**ଉପକରଣ** ଚୂନ, ପାଉଁଶ



Digitized by PPRACHIN, SOA

# ପୁରାତନରୁ ନୂତନ

ସମୟ - ୫ ପିରିୟଡ୍

| ଆଦିମ ମଣିଷ | ଆଜିର ମଣିଷ |
| --- | --- |
|  |  |
|  |  |
|  |  |
|  |  |
|  |  |
|  |  |
|  |  |

ଉପର ଚିତ୍ରରୁ ଆଦିମାନବ ଓ ବର୍ତ୍ତମାନ ମାନବ ମଧ୍ୟରେ ସାତଟି କାର୍ଯ୍ୟର ପାର୍ଥକ୍ୟ ଦେଖାଅ ।



Digitized by PPRACHIN, SOA

| | ଆଦିମାନବ | ବର୍ତ୍ତମାନ ମଣିଷ |
|---|---|---|
| ରହଣି | | |
| ପୋଷାକ | | |
| ନିଆଁର ବ୍ୟବହାର | | |
| ଖାଦ୍ୟ | | |
| ପରିବହନ | | |
| କୃଷି | | |
| ବାର୍ତ୍ତା ପ୍ରେରଣ | | |

- ଆଦିମ ମଣିଷ ବଣର ଜୀବଜନ୍ତୁଙ୍କ ଠାରୁ ଅନେକ କାର୍ଯ୍ୟ ଶିଖିଥିଲା । କାହା ପାଖରୁ କ'ଣ ଶିଖିଥିବ ତୁମେ ଭାବି ଦେଖାଅ ।

| 'କ' | 'ଖ' |
|---|---|
| ପାଣିରେ ପହଁରିବା | ବଣି ଓ ବାଇ ଚଢ଼େଇ |
| ଏ ଗଛରୁ ସେ ଗଛକୁ ଡେଇଁବା | କୁମ୍ଭୀର, ମାଛ |
| ପତ୍ର ବିଛାଇ କୁଡ଼ିଆ ତିଆରି କରିବା | ମାଙ୍କଡ଼, ସିମ୍ପାଜି ଓ ଗରିଲା |

- ଆଜିକାଲି ପରି ଆଦିମ ମଣିଷ ବିଜୁଳି ଆଲୁଅ, ପାଇପ ପାଣି ବା କୃଷି ଜାତ ପଦାର୍ଥ ପାଉ ନଥିଲା ।

ଆଦିମ ମଣିଷ କାହାଠାରୁ ପାଉଥିଲା ?

ରାତିରେ ଆଲୁଅ ____________

ପାଣି ____________

ଫଳ ____________

- କେଉଁ କେଉଁ ଘଟଣାରୁ ଆଦିମ ମଣିଷ ଚକର ଆବଶ୍ୟକତାକୁ ଜାଣିଥବ ?

୧.



୨.



୩.



୪.



- କିଏ ପାଣିରେ ଭାସେ,ଗୋଳ ବୁଲାଅ ।

ପକ୍ଷୀ, ମାଛ, କୁମ୍ଭୀର, ଡଙ୍ଗା, ବାଉଁଶ, ସୋଲ,
କଙ୍କଡ଼ା, କାଠ, ପଥର, ଇଟା, କାଚବାଟି ।

- ଆଦିମ ମଣିଷ ବୁଦ୍ଧି ଖଟାଇ ଚକ, ନିଆଁ ଓ ଭେଳା ବା ଡଙ୍ଗାର ବ୍ୟବହାର ଶିଖିଥିବ । କେଉଁ ଘଟଣାରୁ କ'ଣ ଜାଣିଲା ଯୋଡ଼ ।

| ଘଟଣା | କ'ଣ ଜାଣିଲା |
|---|---|
| ୧. ବଡ଼ି ପାଣିରେ ଶୁଖିଲା କାଠ ଭାସିବା ଦେଖିଲା |  ଚକ |
| ୨. ବଡ଼ ବଡ଼ ପଥର ଉପରୁ ତଳକୁ ଗଡ଼ିବା ଦେଖିଲା |  ଡଙ୍ଗା |
| ୩. ବଣ ପୋଡ଼ିରେ ମରି ପଡ଼ିଥିବା ଜୀବ ଜନ୍ତୁଙ୍କ ମାଂସ ଖାଇଲା |  କାତ |
| ୪. ପାଣିକୁ ହାତରେ ଆଡ଼େଇବା |  ନିଆଁ |



Digitized by PPRACHIN, SOA

**ବୁଢ଼ିମା'ଙ୍କ ଗଳ୍ପ**

ଗୋଟିଏ ଜଙ୍ଗଲରେ ଗଧ, ଓଟ ଓ ବିଲୁଆ ତିନିଜଣ ସାଙ୍ଗ ହୋଇ ରହୁଥିଲେ । ଥରେ ବିଲୁଆକୁ ଶିକାର ମିଳିଲାନି । ସେ ଚିନ୍ତାରେ ଥାଏ । ବୁଲାବୁଲି କରୁକରୁ ସିଂହର ଗୁମ୍ଫା ପାଖରେ ପହଞ୍ଚିଲା । ସେ ଭାବିଲା, ସିଂହ ତ ଚଟାପଟ୍ ଶିକାର କରିନିଏ । ଦେଖିବା, ସେ କିପରି ଶିକାର କରୁଛି । ସିଂହର ଗୁମ୍ଫା ପାଖରେ ଲୁଚି ରହିଲା । ସିଂହ ଓ ତା ସ୍ତ୍ରୀ କଥାବାର୍ତ୍ତା ହେଉଥିବା ଶୁଣିଲା । ସେ ଆସି ଗଧ ଓ ଓଟ ଉପରେ ସେହି ଅନୁସାରେ ଆକ୍ରମଣ କଲା । ଗଧ ଓ ଓଟ ବିଲୁଆର ମନ୍ଦବୁଦ୍ଧି କଥା ଜାଣିପାରି ତାକୁ ଛାଡ଼ି ଗାଆଁ ପାଖକୁ ଚାଲି ଆସିଲେ । ସେଇ ଦିନ ଠାରୁ ସେମାନେ ଲୋକମାନଙ୍କର ବୋଝ ବୋହିବା କାମ କରି ଆସୁଛନ୍ତି ଓ ତାଙ୍କ ସହିତ ଆନନ୍ଦରେ ରହୁଛନ୍ତି ।

■ କିଏ କରେ ?

ବୋଝ ବୋହେ ________________

ଘର ଜଗେ ________________

କ୍ଷୀର ଦିଏ ________________

ହଳ କରେ ________________

ଚୋର ଧରେ ________________

ଗାଡ଼ି ଟାଣେ ________________

■ କେଉଁ କାମରେ ଲାଗେ ?




• କେଉଁଠୁ ମିଳେ ?

| | ଜଙ୍ଗଲରୁ | ବାଡ଼ିବଗିଚାରୁ | ଜମିରୁ |
|---|---|---|---|
| ଝୁଣା → | ______ | ______ | ______ |
| ଆମ୍ବ → | ______ | ______ | ______ |
| ପଣସ → | ______ | ______ | ______ |
| ଧାନ → | ______ | ______ | ______ |
| ଅଁଳା → | ______ | ______ | ______ |
| ଖଲିପତ୍ର → | ______ | ______ | ______ |
| ବାଇଗଣ → | ______ | ______ | ______ |
| କୋଳଥ → | ______ | ______ | ______ |
| ମାଣ୍ଡିଆ → | ______ | ______ | ______ |

• ଘରେ ସାଇତି ରଖୁଥିବା ଶସ୍ୟର ନାମ ଲେଖ ।

ଧାନ, ବିରି, ______ ______ ______ ______

______ ______ ______ ______ ______





Digitized by PPRACHIN, SOA

## ସିନ୍ଧୁ ସଭ୍ୟତା

ପାଞ୍ଚ ହଜାର ବର୍ଷ ପୂର୍ବେ ସିନ୍ଧୁ ନଦୀ କୂଳରେ ଏକ ସଭ୍ୟତା ଗଢ଼ି ଉଠିଥିଲା । ତାକୁ ସିନ୍ଧୁ ସଭ୍ୟତା ବା ମହେନ୍‌ଜୋଦାରୋ ସଭ୍ୟତା କହନ୍ତି । ମହେନ୍‌ଜୋଦାରୋ ଓ ହରପ୍ପା ଅଞ୍ଚଳରୁ ମାଟି ଖୋଳାଯାଇ ଏହି ସଭ୍ୟତାର ପ୍ରମାଣ ମିଳୁଛି । ବର୍ତ୍ତମାନ ଏହା ପାକିସ୍ଥାନରେ ଅବସ୍ଥିତ । ତଳ ଚିତ୍ରରେ ମାଟି ଖନନ ପରେ ମିଳିଥିବା ସଭ୍ୟତାର କିଛି ଚିହ୍ନ ଦିଆଯାଇଛି ।



■ ଏହି ଚିତ୍ରଟିରୁ ତୁମେ କ'ଣ ସବୁ ଦେଖୁଛ ତା'ର ଏକ ତାଲିକା କର ।

______ ______ ______

______ ______ ______

______ ______ ______

## ତୁମ ପାଇଁ କାମ ।

୧. ନିଆଁ ନଥିଲେ କ'ଣ ଅସୁବିଧା ହୁଅନ୍ତା ଲେଖ ।

______

୨. କାହାର କେଉଁ ଅସ୍ତ୍ର ଚିହ୍ନାଅ ଓ ସେଗୁଡ଼ିକର କ୍ରମିକ ନମ୍ବର ଠିକ୍ ଘରେ ଲେଖ ।



| ଆଦିମ ମାନବ | ଆଜିର ମାନବ |
|---|---|
| | |

୩. କାହାପରେ କିଏ ?

(କ) ରନ୍ଧା ମାଂସ, ପୋଡ଼ା ମାଂସ, କଞ୍ଚା ମାଂସ

(ଖ) ତୋପ, ଠେଙ୍ଗା, ମୁନିଆ ପଥର, ବନ୍ଧୁକ, ଖଣ୍ଡା

(ଗ) ବସ୍, କାଠଗଡ଼, ଶଗଡ଼, ଚକ, ରେଳ

(ଘ) ଚକ୍‌ମକି, ଦିଆସିଲି, କାଠକୁ କାଠ ଘଷିବା

(ଙ) ଚମଡ଼ାର ପୋଷାକ, କପଡ଼ା, ଗଛର ଛାଲି, ପଶୁ ଚମଡ଼ା ।





Digitized by PPRACHIN, SOA

୪. ଠିକ୍ ଉତ୍ତରରେ ଗୋଲ୍ ବୁଲାଅ ।

(କ) ମହେନ୍‌ଜୋଦାରୋ ଅଛି ଅବସ୍ଥିତି - ପାକିସ୍ଥାନ, ଭାରତ, ଆଫଗାନିସ୍ଥାନ

(ଖ) ସିନ୍ଧୁ ସଭ୍ୟତା କେଉଁ ସହରରେ ଗଢ଼ି ଉଠିଥିଲା- ଜୟପୁର, ଦିଲ୍ଲୀ, ହରପ୍ପା ଓ ଲାହୋର

(ଗ) ସିନ୍ଧୁ ସଭ୍ୟତାର ସ୍ତ୍ରୀ ଲୋକମାନଙ୍କର ପୋଷାକ - ଶାଢ଼ୀ, ପାଇଜାମା, ଲାଙ୍ଗା,ଘାଘରା, ଶାଲୱାର, କୁର୍ତ୍ତା

୫. କିଏ କେଉଁଠାରେ ରହେ ଯୋଡ଼- ଯେପରି

| | |
|---|---|
| ମୂଷା | ଗୁମ୍ଫାରେ |
| ଆଦିମାନବ | କୋଠାଘରେ |
| ଚଢ଼େଇ | ପାଣିରେ |
| ମାଛ | ବସାରେ |
| ଗୋଧି | ସ୍ଥଳଭାଗରେ |
| ଆଧୁନିକ ମଣିଷ | ଗାତରେ |

୬. ବିଭିନ୍ନ ଗାଡ଼ିର ଚକ ତିଆରି କର ।

ମାଟିରେ, ବାଉଁଶ ପାତିଆରେ, ଡବାର ଢାଙ୍କୁଣିରେ, ପ୍ଲାଷ୍ଟିକ ଡବାର ଖୋଳରେ

୭. ଆଦି ମାନବର ପୋଷାକ, ଖାଦ୍ୟ, ଅସ୍ତ୍ର କ'ଣ ଥିଲା ଲେଖ ।



Digitized by PPRACHIN, SOA

### କ'ଣ ଶିଖିବେ

- ପୁରାତନ ଯୁଗର ମଣିଷର ଜୀବନଧାରା ସଂପର୍କରେ ଜାଣିବେ ।
- ପୁରାତନ ଯୁଗର ମଣିଷ ଜୀବନ ବର୍ତ୍ତମାନ ମଣିଷ ଜୀବନଠାରୁ ସଂପୂର୍ଣ୍ଣ ଅଲଗା ଥିଲା, ତାହା ବୁଝିବେ ।
- ତା'ର ଜୀବନ ଯାପନ ପ୍ରଣାଳୀ ଓ କେଉଁ ପରିସ୍ଥିତିରେ ବାସ କରୁଥିଲା, ତାହା ବୁଝିବେ ।
- ୫୦୦୦ ବର୍ଷ ପୂର୍ବେ ଭାରତର କେତେକ ବିଶେଷ ସ୍ଥାନରେ ବାସ କରୁଥିବା ଲୋକଙ୍କ ଜୀବନ ସଂପର୍କରେ କେତେକ ତଥ୍ୟ ଜାଣିବେ ।

### ସୂଚନା

- ପୁରାତନ ଯୁଗର ମଣିଷର ଖାଦ୍ୟ, ପୋଷାକ, ରହଣି, ଚଳଣି ପ୍ରଭୃତିର ଧାରଣା ଦେବାପାଇଁ ବର୍ତ୍ତମାନ ମଣିଷର ଚଳଣି ସହିତ ତୁଳନାତ୍ମକ ଚିତ୍ରର ତାଲିକା ପାଠ ବହିରେ ଅଛି ।
- ପ୍ରସ୍ତାବିତ ପାଠରେ ପିଲାଙ୍କୁ କିଛି ତଥ୍ୟ ଦିଆଯାଇଛି, ଆଉ କିଛି ତଥ୍ୟ ନିଜେ ଚିନ୍ତା ଓ କଳ୍ପନା କରି ଜାଣିବାର ସୁଯୋଗ ସୃଷ୍ଟି କରାଯାଇଛି ।
- ପିଲାଙ୍କୁ ନିଜର ଅନୁଭୂତିକୁ ଭିତ୍ତି କରି ଆଦିମ ମଣିଷ ପହଁରିବା, ଘର ତିଆରି କରିବା, ଚକ, କାତ ପ୍ରଭୃତିର ବ୍ୟବହାର କରିବା, କାହାପାଖରୁ ବା କେଉଁ ଘଟଣାରୁ ଶିଖିଥିବ, ସେ ବିଷୟ ଜାଣିବା ପାଇଁ ପାଠରେ ପରିସ୍ଥିତି ସୃଷ୍ଟି କରାଯାଇଛି ।
- ପୁରୁଣା କଥାକୁ ଜାଣିବା ମାଧ୍ୟମରେ ପିଲାର ସୃଜନୀ, ଚିନ୍ତା ଓ କଳ୍ପନା ଶକ୍ତିର ବିକାଶ ପାଇଁ ସୁଯୋଗ ଅଛି ।

### ଅଧିକ ତଥ୍ୟ

ମଣିଷ ଶ୍ରେଷ୍ଠ ଜୀବ । ବିଭିନ୍ନ ସମସ୍ୟାର ସମ୍ମୁଖୀନ ହୋଇ ମଣିଷ ନିଜର ପ୍ରଖର ଚିନ୍ତାଧାରା ଓ କଳ୍ପନା ଶକ୍ତିର ପ୍ରୟୋଗ କରି ନୂତନ ଉପାୟ ତଥା କୌଶଳ ଆବିଷ୍କାର କରିପାରିଛି, ଯାହାକି ବିଜ୍ଞାନ ଓ କାରିଗରି କ୍ଷେତ୍ରରେ ପ୍ରଦର୍ଶିତ ଏବଂ ଏହା ଦ୍ୱାରା ନିଜ ଜୀବନର ମାନର ବିକାଶ ହୋଇପାରିଛି ।

### ଆଲୋଚନା

- ନିଆଁକୁ ଆଦିମ ମଣିଷ କେଉଁ କେଉଁ କାମରେ ଲଗାଇଥିବ ?
- ଆମେ କେଉଁ କେଉଁ ଉପାୟରେ ନିଆଁ ପାଇପାରିବା ?

### ତର୍କ ସଭା

ପିଲାମାନେ ଦୁଇଦଳ ହୋଇ ତର୍କ କରିବେ-

- ନଈ କୂଳରେ ବସବାସ କଲେ କି କି ସୁବିଧା ହୁଏ ଓ କ'ଣ ଅସୁବିଧା ହୁଏ ?
- ଆଦିମ ମଣିଷର ସମସ୍ୟା ଓ ଆମର ସମସ୍ୟା
- ଆଦିମ ମଣିଷ କ'ଣ ସୁବିଧା ପାଉଥିଲା ଓ ଆମେ କି କି ସୁବିଧା ପାଉଛୁ ।

### ପିଲାଏ ନିଜେ କରି ଖେଳିବେ

- କାଗଜ ବାକ୍ସ ଓ କାଠ ବାକ୍ସରେ ଚକ ଲଗାଇ ଗାଡ଼ି କରିବେ । ବାଲି, ଗୋଡ଼ି, ମଂଜି ପ୍ରଭୃତି ଭର୍ତ୍ତି କରି ଦଉଡ଼ି ବାନ୍ଧି ଟାଣିବେ ।
- କାଗଜରେ ଡଙ୍ଗା ତିଆରି କରିବେ ।
- କାଠରେ ଚକ ଲଗା ଗାଡ଼ି ତିଆରି କରିବେ ।

### କରି ଦେଖ ଓ କହ

- ରାତିରେ ପଥରକୁ ପଥର ସହିତ ଘଷିବେ ।
- ବଡ଼ ପଥରକୁ ହାତରେ ଠେଲିବେ ଓ ଶକ୍ତ ବାଡ଼ି ସାହାଯ୍ୟରେ ଗଡ଼େଇବେ ।



Digitized by PPRACHIN, SOA

আলোচনা

ଆଲୋଚନା

☞ ଗାଁ ଲୋକ / ସହରରେ ରହୁଥିବା ଲୋକଙ୍କ ଖାଦ୍ୟ, ପୋଷାକ, ରହଣି, କୃଷି, ପରିବହନ, ବାର୍ତ୍ତାପ୍ରେରଣ, ବିଷୟରେ ଆଲୋଚନା କରିବେ ।

କାମ

☞ ପ୍ରତିଯୋଡ଼ା ଚିତ୍ରରେ କ'ଣ କ'ଣ ହେଉଛି, ଜଣ ଜଣ କରି ପିଲା କହିବେ ।

☞ ଆଦିମ ମଣିଷ ଓ ବର୍ତ୍ତମାନ ମଣିଷ ମଧ୍ୟରେ ପାର୍ଥକ୍ୟ ଲେଖିବାବେଳେ ନିଜର ବ୍ୟବହାରକୁ ବର୍ତ୍ତମାନ ମଣିଷ ବ୍ୟବହାର ରୂପେ ଲେଖିବେ ।

☞ କେଉଁଠୁ ମିଳେ, କିଏ କ'ଣ କରେ ପ୍ରଭୃତି ଜାଣିବା ପାଇଁ ପିଲାମାନେ ଦଳଗତ ଭାବେ ଆଲୋଚନା କରି ଲେଖିବେ ।

☞ ସିନ୍ଧୁ ସଭ୍ୟତାର ବ୍ୟବହୃତ ଜିନିଷର ବଡ଼ ଚାର୍ଟ କାନ୍ଥରେ ଟାଙ୍ଗିବେ ।

☞ ମାନଚିତ୍ର ଦେଖି, ସେଥିରେ ସିନ୍ଧୁ ଉପତ୍ୟକା ଅଂଚଳକୁ ଚିହ୍ନାଇବେ । ସିନ୍ଧୁ ଉପତ୍ୟକାଠାରୁ ଓଡ଼ିଶାର ଅବସ୍ଥିତି ଓ ଦୂରତା ସଂପର୍କରେ ବୁଝାଇବେ ।

☞ ଅଭ୍ୟାସ ଫର୍ଦ୍ଦ ପୂରଣ ବେଳେ ଶିକ୍ଷକ ଭାରତ ମାନଚିତ୍ରରେ ଓଡ଼ିଶାକୁ (ପିଲାଙ୍କ ଦ୍ୱାରା) ଚିହ୍ନାଇବେ ।

**ଷଷ୍ଠ ଏକକ ପରୀକ୍ଷଣ**



Digitized by PPRACHIN, SOA

## ଶିକାର ଖୋଜା

**ସମୟ - ୫ ପିରିୟଡ୍**

ବାଘ, ସିଂହ ଓ ବିଲୁଆ ମଧ୍ୟରେ ସଭା ବସିଲା । ବାଘ କହିଲା-''ଜଙ୍ଗଲ ତ ସଫା ହୋଇଗଲାଣି । ଆଉ ଶିକାର ମିଳୁନାହିଁ, କ'ଣ କରିବା'' ? ସିଂହ କହିଲା, ''ଚାଲ, ସମସ୍ତେ ମିଶି ଶିକାର ଖୋଜିବା ।'' ଜଙ୍ଗଲ ମଧ୍ୟରେ ଖୋଜାଖୋଜି କରୁ କରୁ ସମ୍ବରଟାଏ ମିଳିଗଲା । ସେମାନଙ୍କ ମନ ଭାରି ଖୁସି । ମାଂସ ସମାନ ସମାନ ଭାଗ ହେଲା । ଯେ ଯାହାର ଭାଗ ଧରି ଫେରିଲେ । ବାଘର ଛୁଆ ବୋଲି ଗୋଟେ । ହେଲେ ସିଂହର ଦୁଇଟା ଆଉ ବିଲୁଆର ଛୁଆ ଚାରିଟି ।



୧. କାହା ଛୁଆ ଭାଗରେ ବେଶି ମାଂସ ପଡ଼ିବ ?

୨. କିଏ ସବୁଠାରୁ କମ୍ ଖାଦ୍ୟ ପାଇଥିବ ?

୩. କାହାର ଖାଦ୍ୟ, ଖାଇବା ପରେ ବଳି ପଡ଼ିଥିବ ?

■ ପରିବାର ବଡ଼ ହେଲେ କି କି ଅସୁବିଧା ହେବ ଚିତ୍ର ଦେଖି ଲେଖ ।

______________________________

______________________________

______________________________

______________________________





Digitized by PPRACHIN, SOA



- ___
- ___
- ___
- ___
- ___
- ___
- ___

■ ଉପରୋକ୍ତ ଚିତ୍ରରୁ ଗୋଟିଏ ଛୋଟ ପରିବାରରେ ତୁମେ କି କି ସୁବିଧା ଅନୁମାନ କରି  ପାରୁଛ ଲେଖ ।

ଭିଡ଼ ତ ଭିଡ଼,
ଘରୁ ବାହାର,
ବସ୍‌ରୁ ରେଳ,
ଡାକ୍ତର ଖାନାକୁ,
ମଣିଷ ନୁହେଁତ
ପିମ୍ପୁଡ଼ି ଧାର ।





■ ସମସ୍ତେ କ'ଣ ବସ୍‌ରେ ଚଢ଼ି ପାରିବେ ?

■ ଯେଉଁ ମାନେ ବସ୍‌ରେ ଅଛନ୍ତି ସେମାନେ କ'ଣ ଆରାମରେ ଅଛନ୍ତି ?

■ ଲୋକମାନେ କ'ଣ ସୁବିଧାରେ ରେଳଯାତ୍ରା କରି ପାରୁଛନ୍ତି ?

■ ଏହାର କାରଣ କ'ଣ ?



ଲୋକସଂଖ୍ୟା ବଢୁଥିବାରୁ ବିଭିନ୍ନ କାମ ପାଇଁ ଯାଉଥିବା ଲୋକଙ୍କ ଭିଡ଼ ଯୋଗୁଁ ଯିବା ଆସିବାରେ ଅସୁବିଧା ସୃଷ୍ଟି ହେଉଛି ।



Digitized by PPRACHIN, SOA



ଲୋକସଂଖ୍ୟା ବଢ଼ୁଥିବାରୁ ଡାକ୍ତରଖାନାରେ ମଧ୍ୟ ଭିଡ଼ ଜମୁଛି, ବହୁତ ସମୟ ଅପେକ୍ଷା କଲେ ବି ସମସ୍ତଙ୍କୁ ଉଚିତ୍ ଚିକିତ୍ସା ଯୋଗାଇ ଦେବା ସମ୍ଭବ ହେଉନାହିଁ ।




- ଚିତ୍ରକୁ ଦେଖି କ'ଣ ହେବ ଲେଖ । ଯଦି ଏସବୁ ଅସୁବିଧା ହୁଏ, ଲୋକେ ସୁଖରେ ରହି ପାରିବେ କି ?

______________________________

______________________________

______________________________

______________________________

______________________________

ତୁମ ପାଇଁ କାମ :





୧. ଏହି ଚିତ୍ରରୁ ତୁମେ କ'ଣ ଲକ୍ଷ୍ୟ କରୁଛ, ଲେଖ ।

______________________________

୨. କେଉଁଟି ଠିକ୍ ଚିହ୍ନାଅ ।




- ଭିତରେ ଅନେକ ଲୋକ ଠିଆ ହୋଇଥିବାରୁ
- ଲମ୍ବା ଧାଡ଼ିଥିବାରୁ
- ହେଲ୍‌ପର ଦୁଆର ମୁହଁରେ ଠିଆ ହୋଇଥିବାରୁ
- ବସ୍ ଭିତରେ ଲୋକେ ଆରାମରେ ବସିଥିବାରୁ
- ଭିଡ଼ଥିବାରୁ
- ବହୁତ ଜିନିଷ ଭର୍ତ୍ତି ହୋଇଥିବାରୁ

୩. ତୁମ ପରିବାରର ସଦସ୍ୟଙ୍କ ତାଲିକା କର ।

_____ _____ _____ _____ _____ _____ _____

_____ _____ _____ _____ _____ _____ _____

୪. ଖାଲି ବେଲୁନରେ ଲେଖ ।






Digitized by PPRACHIN, SOA

୫.



କାହାକୁ ସୁଖୀ ପରିବାର କହିବା, ଦର୍ଶାଅ

୬. ଗୁରୁଜନଙ୍କୁ ପଚାରି ବୁଝ

(କ) ଆଗେ ତୁମ ଗାଁରେ କ'ଣ ଏତେ ଲୋକ ଥିଲେ ?

(ଖ) ତୁମ ବାପା, ମା ତା'ଙ୍କ ପିଲା ଦିନେ ବିଭିନ୍ନ ପର୍ବପର୍ବାଣିରେ ଯେପରି ଖୁସି ହେଉଥିଲେ ଏବେ ସେମିତି ଖୁସି ହୋଇପାରୁଛନ୍ତି କି ?

ପୂର୍ବେ ଏତେ ଲୋକ ନଥିଲେ । ରହିବା, ଖାଇବା, ପିନ୍ଧିବା, ପଢ଼ିବା ପାଇଁ ବିଶେଷ ଅସୁବିଧା ହେଉ ନଥିଲା । ବସ୍, ରେଳ, ଡାକ୍ତରଖାନା, ହାଟ ବଜାର ଆଦି ସ୍ଥାନରେ ଏତେ ଭିଡ଼ ନଥିଲା । ଲୋକମାନେ ସୁଖ ସୁବିଧାରେ ଥିଲେ । କିନ୍ତୁ ଏବେ ସବୁ ସ୍ଥାନରେ ଭିଡ଼ ।

୭. ଏପରି ଭିଡ଼ ହେବାର କାରଣ କ'ଣ ?

୮. ତୁମ ଗାଁରେ ଲୋକ ସଂଖ୍ୟା ବଢ଼ିଗଲେ କି କି ଅସୁବିଧା ହେବ ?



Digitized by PPRACHIN, SOA

**କ'ଣ ଶିଖିବେ**

- ଛୋଟ ଘରେ ବଡ଼ ପରିବାର ରହିବା ଫଳରେ ହେଉଥିବା ଅସୁବିଧାଗୁଡ଼ିକୁ ଲକ୍ଷ୍ୟ କରିବେ ।
- ଡାକ୍ତରଖାନା, ରେଳଗାଡ଼ି, ବସ୍, ଇତ୍ୟାଦିରେ ହେଉଥିବା ଅତ୍ୟଧିକ ଭିଡ଼କୁ ଲକ୍ଷ୍ୟ କରିବେ ।
- ସ୍ଥାନୀୟ ଗୁରୁଜନମାନଙ୍କ ସହିତ ଆଲୋଚନା କରି ବର୍ତ୍ତମାନର ଜନଗହଳି ଅବସ୍ଥାକୁ ପୂର୍ବକାଳର ଅବସ୍ଥାସହ ତୁଳନା କରିବେ ।

**ସୂଚନା**

- ଗପ ଓ ଚିତ୍ର ମାଧ୍ୟମରେ ବଡ଼ ପରିବାର ହେବାଦ୍ୱାରା କ'ଣ ସବୁ ଅସୁବିଧା ହେଉଛି ପାଠ ବହିରେ ଦିଆଯାଇଛି ।
- ଡାକ୍ତରଖାନା, ବସ୍‌ଷ୍ଟାଣ୍ଡ, ରେଳଷ୍ଟେସନ୍, କଣ୍ଟ୍ରୋଲଦୋକାନ ଇତ୍ୟାଦିରେ ଭିଡ଼ ଯୋଗୁଁ କିପରି ଅସୁବିଧା ହେଉଛି ଚିତ୍ରରେ ସୂଚିତ ହୋଇଛି ।
- ଶିକ୍ଷଣ କାର୍ଯ୍ୟ ମାଧ୍ୟମରେ ପରିବାର ଛୋଟ ଥିଲେ କେଉଁସବୁ ସୁବିଧା ହେଉଛି ଦିଆଯାଇଛି ।

**ପ୍ରସ୍ତୁତି**

ପାଠ ବହିରେ ଥିବା କାର୍ଯ୍ୟ ଭିତରୁ ଓ କେଉଁଟି ଦଳଗତ ଓ କେଉଁଟି ବ୍ୟକ୍ତିଗତ ନିର୍ଦ୍ଧାରଣ କରନ୍ତୁ , ଯେପରି- କାର୍ଯ୍ୟ ୧,୨,୫ ଓ ୬ କୁ ଦଳଗତ ରୂପେ ଏବଂ କାର୍ଯ୍ୟ ୩, ୪ କୁ ବ୍ୟକ୍ତିଗତ ରୂପେ କରାନ୍ତୁ ।

**କାମ**

- ପିଲାଙ୍କୁ ଗୋଲ୍ ଆକାରରେ ବସାଇ ଖେଳଣା ବଲ୍‌ଟିଏ ଦିଅନ୍ତୁ । ବଲ୍ ପାଇବା ପିଲା କେଉଁ ପରିବାରରେ ରହନ୍ତି କହିବେ । (ସାନ/ବଡ଼)
- ଶିକାର ଖୋଜା ଗପଟି ଚିତ୍ର ପ୍ରଦର୍ଶନ କରି କହନ୍ତୁ ।

**ଉପକରଣ**

''ଛୋଟ ପରିବାର ସୁଖୀ ପରିବାର''ର ଚିତ୍ର, ବସ୍, ଡାକ୍ତରଖାନା, ରେଳଗାଡ଼ିରେ ଭିଡ଼ର ଚିତ୍ର

**ଅଧିକ ତଥ୍ୟ**

- ଛୋଟ ପରିବାର ସୁଖୀ ପରିବାର । ଏହା ଦେଶର ଜନସଂଖ୍ୟା ବୃଦ୍ଧି ରୋକିବାରେ ସାହାଯ୍ୟ କରେ । ଏଣୁ ପରିବାର ଛୋଟ ହୋଇଥିଲେ ସରକାରଙ୍କ ତରଫରୁ ବିଭିନ୍ନ ସୁବିଧା ସୁଯୋଗ ଓ ପ୍ରୋତ୍ସାହନ ମିଳିଥାଏ । ଯଥା- ବିଭିନ୍ନ ଶିକ୍ଷା ଅନୁଷ୍ଠାନରେ ନାମ ଲେଖାଇବା, ଚାକିରିକ୍ଷେତ୍ରରେ ଆର୍ଥିକ ସାହାଯ୍ୟ ପାଇବା , ଗ୍ରୀନ୍ କାର୍ଡ଼ ସଂଗ୍ରହ କାରୀଙ୍କୁ ଜମି (ଘରଡିହ) ମିଳିବା ଇତ୍ୟାଦି ।
- ପୁଅ ବା ଝିଅ ଆଶା କରି ଅନେକ ବାପା, ମାଆ ପରିବାରର ପିଲାସଂଖ୍ୟା ବଢ଼ାଇ ଥାଆନ୍ତି । କିନ୍ତୁ ଆଜିକାଲି ସମସ୍ତେ ଉପଲବ୍ଧି କଲେଣି- ପୁଅ ଝିଅ ସମାନ ।

**ଦଳଗତ କାର୍ଯ୍ୟ**

- ପିଲାମାନେ ୪ଟି ଦଳରେ ବିଭକ୍ତ ହୋଇ ପରିବାର ବଡ଼ ହେଲେ କେଉଁ ଅସୁବିଧା ସବୁ ହେଉଛି ଲେଖିବେ ଓ ଦଳଗତ ଆଲୋଚନା କରିବେ, ଶ୍ରେଷ୍ଠ ଲେଖାଟିକୁ ଶିକ୍ଷକ କଳାପଟାରେ ଲେଖିବେ ଓ ପିଲାମାନେ ତାହା ଲେଖି ନେବେ ।
- ପରିବାର ଛୋଟ ଥିଲେ କେଉଁ ସବୁ ସୁବିଧା ହୁଏ ତାହା ଲେଖିବେ ଓ ଦଳଗତ ଆଲୋଚନା କରିବେ । ଶ୍ରେଷ୍ଠ ଲେଖାକୁ ଶିକ୍ଷକ କଳାପଟାରେ ଲେଖିଦେବେ । ପିଲାମାନେ ତାହା ଖାତାରେ ଲେଖିନେବେ ।
- ଡାକ୍ତରଖାନାରେ ବସ୍ ଭିଡ଼ରେ ରେଳ ଷ୍ଟେସନ୍‌ରେ ଭିଡ଼ ହେବାଦ୍ୱାରା କେଉଁ ଅସୁବିଧା ହେଉଛି ତାହା ଦଳଗତ ଆଲୋଚନା କରିବେ ।

**ପ୍ରକଳ୍ପ**

- ଛୋଟ ପରିବାର ହେଲେ କ'ଣ ସୁବିଧା ହୁଏ ସେ ସମ୍ପର୍କରେ ତୁମ ସାଙ୍ଗ ପାଖକୁ ଏକ ଚିଠି ଲେଖ ।
- ଗାଁରେ ଥିବା ଛୋଟ ପରିବାର ମାନଙ୍କର ଏକ ତାଲିକା ପ୍ରସ୍ତୁତ କରିବେ । ସେ ପରିବାରରେ କ'ଣ କ'ଣ ସୁବିଧା ହୁଏ, ତାଲିକା କରିବେ ।
- ବଡ଼ ପରିବାରର ସଦସ୍ୟ ମାନେ କିପରି ଅସୁବିଧା ଭୋଗ କରନ୍ତି ତା'ର ଏକ ତାଲିକା ପ୍ରସ୍ତୁତ କରିବେ ।



Digitized by PPRACHIN, SOA

# ମାନଚିତ୍ର ଅଧ୍ୟୟନ

ସମୟ - ୪ ପିରିୟଡ୍



■ ଦିଆଯାଇଥିବା ଚିତ୍ର ପରି ଆଉ କେତେକ ଚିତ୍ର ଅଙ୍କନ କର ।








■ ଚିତ୍ର ଦେଖି ଲେଖ ।

ବିଦ୍ୟାଳୟର ନାମ ______

ଦ୍ୱାର ସଂଖ୍ୟା ______

ଝରକା ସଂଖ୍ୟା ______

କଳାପଟା ସଂଖ୍ୟା ______

ଟେବୁଲ୍ ସଂଖ୍ୟା ______

ଶ୍ରେଣୀ କକ୍ଷ ______

ଚଉକି ସଂଖ୍ୟା ______ ଦଳ ସଂଖ୍ୟା ______

ପିଲାମାନଙ୍କ ସଂଖ୍ୟା ______ ଶିକ୍ଷକ ସଂଖ୍ୟା ______

■ କ'ଣ ଅଛି ?

ଦ୍ୱାର ସାମ୍ନାରେ ______ ______

କଳାପଟା ପାଖରେ ______ ______

ଝରକା ସାମ୍ନାରେ ______ ______

ଟେବୁଲ୍ ପାଖରେ ______ ______

■ ଦିଆଯାଇଥିବା ଘରେ ତୁମ ଶ୍ରେଣୀର କୋଠରିର ନକ୍ସା ଅଙ୍କନ କର ।



■ ତୁମ ଗାଁରେ/ସାହିରେ କ'ଣ କ'ଣ ଅଛି ତାଲିକା କର ।

୧. ______

୨. ______

୩. ______

୪. ______

୫. ______

୬. ______

୭. ______

୮. ______

■ ଆସ ଦେଖିବା ।






Digitized by PPRACHIN, SOA

■ ତୁମ ଗାଁର କେଉଁ ଦିଗରେ କ'ଣ କ'ଣ ଅଛି ଲେଖ ।

ପୂର୍ବ → ______________________

ପଶ୍ଚିମ → ______________________

ଉତ୍ତର → ______________________

ଦକ୍ଷିଣ → ______________________

■ ତୁମ ନିଜ ଗାଁର ମାନଚିତ୍ରଟିଏ ଅଙ୍କନ କର ।



■ ମଧୁପୁର ଗାଁର ମାନଚିତ୍ର ଦେଖି ଉତ୍ତର ଲେଖ ।

ଗାଁ ଠାରୁ ପାଖରେ କିଏ ? ______________________

ଗାଁ ଠାରୁ ଦୂରରେ କିଏ ? ______________________

ମନ୍ଦିର ପାଖରେ କ'ଣ ଅଛି ? ______________________

ସ୍ୱାସ୍ଥ୍ୟକେନ୍ଦ୍ର କେଉଁଠାରେ ଅଛି ? ______________________

ବିଦ୍ୟାଳୟ ପାଖରେ କ'ଣ ଅଛି ? ______________________

ଦୋକାନଠାରୁ କେଉଁଟା ପାଖ ? ______________________

ଠିକ୍ ମାପ ନ ନେଇ ଆମେ ଆମ ଗାଁର ହାତ ଅଙ୍କା ମାନଚିତ୍ରଟିଏ ଆଙ୍କିପାରିବା । ସେଥିରେ ବିଦ୍ୟାଳୟ, ପଞ୍ଚାୟତ ଅଫିସ, ମନ୍ଦିର, ଦୋକାନ, ନଳକୂଅ ଆଦି ଦେଖାଇ ପାରିବା । କିନ୍ତୁ ଏହିସବୁ ମାନଚିତ୍ର (ନକ୍ସା) ଠିକ୍ ଭାବେ ଆଙ୍କିବା ପାଇଁ ଆମେ ସ୍କେଲ ସାହାଯ୍ୟରେ ମାପ ନେଇପାରିବା ।

ଏହିସବୁ ସ୍ଥାନ ଦେଖାଇ ଆମ ଗାଁର ମାନଚିତ୍ର ଅଙ୍କନ କରିବା ।





Digitized by PPRACHIN, SOA

## ତୁମ ପାଇଁ କାମ :

୧. ମ୍ୟାଜିକ ଡଙ୍ଗା





କଳାରଙ୍ଗ ଚିହ୍ନିତ ଘର ଠାରୁ ୩ଟି ଘର ଉତ୍ତରକୁ ଯାଅ । ଦୁଇଟି ଘର ପୂର୍ବକୁ ଆସ । ସେହିଠାରୁ ୪ଟି ଘର ଦକ୍ଷିଣକୁ ଆସ ଓ ୬ଟି ଘର ପୂର୍ବକୁ ଆସ । ୪ଟି ଘର ଉତ୍ତରକୁ ଯାଅ । ପୁଣି ୨ଟି ଘର ପଶ୍ଚିମକୁ ଆସି ଗୋଟିଏ ଘର ଉତ୍ତରକୁ ଯାଅ । ସେଠାରୁ ୨ଟି ଘର ପୂର୍ବକୁ ଆସି ମ୍ୟାଜିକ ଡଙ୍ଗାରେ ବସି ଆକାଶକୁ ଉଡ଼ିଯାଅ ।

୨. ତୁମ ଗାଁ ମନ୍ଦିର ଉଚ୍ଚତା ୩୦ମି.= ୧ଇଞ୍ଚ ମାପନେଇ ମନ୍ଦିରର ଚିତ୍ର ଅଙ୍କନ କର ।

୩. ତୁମ ବିଦ୍ୟାଳୟ ହତାର ଲମ୍ବ ଓ ଓସାର ମାପ ପାଇଁ ଯେ କୌଣସି ମାନ ନେଇ କାଗଜ ଉପରେ ଏହାକୁ ଅଙ୍କନ କର ଓ ସେଥିରେ ବିଦ୍ୟାଳୟ ହତାର ବିଭିନ୍ନ କଥା ଦେଖାଅ ।

୪. ସକାଳୁ ସୂର୍ଯ୍ୟଙ୍କ ଆଡ଼କୁ ମୁହଁ କରି ଠିଆ ହେଲେ ତୁମର-

୧. ପିଠି__________ ଦିଗକୁ ରହିବ ।

୨. ବାମ ହାତ__________ ଦିଗକୁ ରହିବ ।

୩. ଡାହାଣ ହାତ__________ ଦିଗକୁ ରହିବ ।





Digitized by PPRACHIN, SOA

କ'ଣ ଶିଖିବେ

ଶ୍ରେଣୀ କୋଠରିର ନକ୍ସା ବା ଚିତ୍ରଟି ଆଙ୍କି ବିଦ୍ୟାଳୟ ଏବଂ ସ୍ଥାନୀୟ ଅଞ୍ଚଳ ଅଥବା ଏହାର କେତେକ ଅଂଶ ନେଇ ହାତଟଣା ମାନଚିତ୍ର ଅଙ୍କନ କରିବେ ।

ସୂଚନା

- ନକ୍ସା ବା ଚିତ୍ରଦେଖି ବିଭିନ୍ନ ସ୍ଥାନକୁ ନିର୍ଣ୍ଣୟ କରିପାରିବେ ।
- ଆନୁମାନିକ ଚିତ୍ର, ନକ୍ସା, ସ୍ଥାନୀୟ ମାନଚିତ୍ର, ମାଂପ ଅନୁସାରେ ମାନଚିତ୍ର ଅଙ୍କନ କରିପାରିବେ ।
- ନିଜ ପରିବେଶର ନକ୍ସା ଅଙ୍କନ ଓ ଅଧ୍ୟୟନ କରିପାରିବେ ।
- ମାନଚିତ୍ରରେ ଭିନ୍ନ ଭିନ୍ନ ସ୍ଥାନକୁ ନିରୂପଣ କରିପାରିବେ ।
- ଶ୍ରେଣୀକକ୍ଷର ନକ୍ସା ଦେଖି ସେଥିରେ ଥିବା ପିଲା, ଶିକ୍ଷକ, କଳାପଟା, କବାଟ, ଝରକା ପ୍ରଭୃତିର ସ୍ଥିତି ଓ ସଂଖ୍ୟା ଜାଣିପାରିବେ ।
- ଗାଁର ନକ୍ସା ଦେଖି ଘର, ସାହି, ପଡ଼ିଆ, ମନ୍ଦିର, ସର୍ବସାଧାରଣ ସ୍ଥାନ ପ୍ରଭୃତିକୁ ଚିହ୍ନିବେ ।
- ଶ୍ରେଣୀ କୋଠରିର ନକ୍ସା ଅଙ୍କନ କରିବା, ମାନ ନ ନେଇ ନକ୍ସା ଅଙ୍କନ କରିବା, ଦିଗ ଚିହ୍ନିବା ପାଇଁ ପାଠ ବହିରେ ସୁଯୋଗ ଅଛି ।
- ବିନ୍ଦୁପୂର୍ଣ୍ଣ ସ୍ଲେଟ୍‌ରେ ବିନ୍ଦୁମାନଙ୍କୁ ଯୋଗକରି ଇଚ୍ଛା ମୁତାବକ (ବସ୍ତୁ ବା ପ୍ରାଣୀ) ଚିତ୍ର ଅଙ୍କନ କରିବେ ।
- ଦିଆଯାଇଥିବା ବିନ୍ଦୁକୁ ଯୋଗକରି ଗୋଟିଏ ମୂଷାର ଚିତ୍ର ଅଙ୍କନ କର ।
- ○ □ △ ▭ S । ଭଳି ବିଭିନ୍ନ ସଂକେତ ପ୍ରସ୍ତୁତ କରିବେ ।
- ଶିକ୍ଷକ ଶୂନଟିଏ (୦) ଲେଖିବେ । ଏହି (୦) ରୁ ଗୋଟିଏ ଝିଅ ପିଲାର ଚିତ୍ର ଅଙ୍କନ କରିବା ପାଇଁ ପ୍ରତ୍ୟେକ ପିଲା ଜଣ ଜଣ କରି କିଛି କିଛି ଅଂଶ ଯୋଡ଼ି ଚିତ୍ରଟିକୁ ପୂର୍ଣ୍ଣାଙ୍ଗ କରିବେ ।
- ସ୍ଥାନୀୟ ପରିବେଶକୁ ନେଇ କିଛି ନକ୍ସା ତିଆରି କରନ୍ତୁ ।

ବିଶେଷ ତଥ୍ୟ

ଗାଁର ଚାରିପଟେ ଥିବା ଜମିବାଡ଼ି, ପୋଖରୀ, ମନ୍ଦିର ପ୍ରଭୃତିର ନକ୍ସା, ତହସିଲ୍/ ବନ୍ଦୋବସ୍ତ ଅଫିସରେ ଥାଏ । ସେହିଭଳି ବିଭିନ୍ନ ସବ୍‌ଡିଭିଜନ୍ ଓ ବ୍ଲକ୍‌ର ସୀମାରେଖା ଜିଲ୍ଲା ବନ୍ଦୋବସ୍ତ ଅଫିସରେ, ଜିଲ୍ଲାର ଓ ରାଜ୍ୟର ସୀମାରେଖା ରାଜ୍ୟ ବନ୍ଦୋବସ୍ତ ଓ ରାଜ୍ୟ ତଥା ଦେଶର ସୀମାରେଖା କେନ୍ଦ୍ର ସରକାର ବା ଜାତୀୟ ବନ୍ଦୋବସ୍ତ ଅଫିସରେ ଥାଏ । ସରକାରଙ୍କ ଅଜାଣତରେ ଏହାର ପରିବର୍ତ୍ତନ ବୈଧ ନୁହେଁ ।

କାମ

(ଶ୍ରେଣୀ ପ୍ରକୋଷ୍ଠର ଚିତ୍ର)




- ପିଲାମାନେ ମାନଚିତ୍ରରେ ବିଭିନ୍ନ ଦିଗର ସୂଚନା ପାଇ ପାରିବେ ।
- ପ୍ରଥମେ ଯାଇ ପିଲାମାନେ ଧାଡ଼ି ଧାଡ଼ି କରି ବସିବେ ।
- ପ୍ରଥମ ପିଲା ଉତ୍ତର ଦିଗର ପ୍ରଥମ କବାଟ ବାଟଦେଇ ଭିତରକୁ ପଶିବ ଓ ସୂଚନା ଦିଆଯାଇଥିବା ଅନୁସାରେ ଯାଇ ନିଜ ସ୍ଥାନରେ ବସିବ ।
- ଦ୍ୱିତୀୟ ପିଲାକୁ କୁହାଯିବ ଯେ ବିଭିନ୍ନ ରାସ୍ତା ଦେଇ ପିଲାଙ୍କ ଭିତରେ ଯାଇ ଗୋଟିଏ ସ୍ଥାନରେ ବସିବ ଓ ଅନ୍ୟ ଜଣେ ପିଲା ତାହା ନିରୀକ୍ଷଣ କରି ନକ୍ସାରେ ତା ରାସ୍ତାକୁ ସୂଚାଇବ ।



Digitized by PPRACHIN, SOA

☞ ପ୍ରଥମ ଧାଡ଼ିର ଉତ୍ତରପଟରୁ ଦ୍ୱିତୀୟ ସ୍ଥାନରେ ବସିଥିବା ପିଲା ପଞ୍ଚମ ଧାଡ଼ିର ତୃତୀୟ ପିଲାପାଖକୁ ଯିବ, ସେହିପରି ପ୍ରଥମ ଧାଡ଼ିର ତୃତୀୟ ପିଲା ଚତୁର୍ଥ ଧାଡ଼ିର ପଞ୍ଚମ ପିଲା ପାଖକୁ ଯିବ କାହାର ରାସ୍ତା ବେଶୀ ପିଲାମାନେ ନିର୍ଣ୍ଣୟ କରିବେ ।

**ନକ୍ସା ଦେଖି ଜାଣିବା**

ତୁମେ କେଉଁଠି, ମୁଁ କେଉଁଠି ?

ଶ୍ରେଣୀରେ ପିଲାମାନେ କିଏ କେଉଁଠି ବସିଛନ୍ତି, ନିଜ ନିଜର ସ୍ଥାନକୁ ନକ୍ସାରେ ଦର୍ଶାଇବା ସଂଗେ ସଂଗେ କେଉଁ ସ୍ଥାନରେ କ'ଣ ଅଛି (ଶ୍ରେଣୀ କକ୍ଷରେ) ତାହା ସୂଚାଇ ପାରିବେ ।



Digitized by PPRACHIN, SOA

# ଆମ ଜିଲା

ସମୟ - ୬ ପିରିୟଡ୍

ଆମ ଜିଲାର ନାମ - 

ଆମ ପଡ଼ୋଶୀ ଜିଲା -

ପୂର୍ବରେ

ପଶ୍ଚିମରେ

ଉତ୍ତରରେ

ଦକ୍ଷିଣରେ

ଜିଲାର କ୍ଷେତ୍ରଫଳ ______ ବର୍ଗ କି.ମି.

ଆମ ଜିଲାର ଜନସଂଖ୍ୟା

ସବ୍‌ଡିଭିଜନମାନଙ୍କ ନାମ

ବ୍ଲକମାନଙ୍କର ନାମ

ଆମ ଜିଲାରେ ଥିବା-

ପାହାଡ଼, ପର୍ବତ

ନଦୀ, ହ୍ରଦ

ଖଣିଜ ପଦାର୍ଥ

ଜଙ୍ଗଲରୁ ସଂଗୃହୀତ ଦ୍ରବ୍ୟ

ଫସଲ

ମୁଖ୍ୟ ପର୍ବପର୍ବାଣି

ନାଚ, ଗୀତ

ପ୍ରଧାନ ସହର

ଆମ ଜିଲା ବିଷୟରେ ଆମେ ଯାହା ଅଧିକ ଜାଣୁ........

______________________________

______________________________

______________________________

______________________________

______________________________






Digitized by PPRACHIN, SOA

**କ'ଣ ଶିଖିବେ**

☞ ମାନଚିତ୍ରରେ ଦିଗ ନିର୍ଣ୍ଣୟ କରି ପାରିବେ ।

☞ ଜିଲାର ମୁଖ୍ୟ ପ୍ରାକୃତିକ ଭୂମିରୂପ, ନଦୀ, ଦର୍ଶନୀୟ ସ୍ଥାନ, ପର୍ବପର୍ବାଣି କୃଷି ଏବଂ ଶିଳ୍ପ ବିଷୟରେ ଜାଣିବେ ।

☞ ଜିଲାର ମାନଚିତ୍ରଅଙ୍କନ କରିପାରିବେ ଓ ତହିଁରେ ପ୍ରାକୃତିକ ଭୂଭାଗ, ପ୍ରସିଦ୍ଧ ସ୍ଥାନ, ରାସ୍ତା ଦେଖାଇ ପାରିବେ । ଜିଲାର ଲୋକମାନଙ୍କ ଜୀବନ ଧାରା ବର୍ଣ୍ଣନା କରି ପାରିବେ ।

**ସୂଚନା**

ପିଲାମାନେ ଓଡ଼ିଶା ମାନଚିତ୍ରରୁ ଜିଲା ଗୁଡ଼ିକୁ ଚିହ୍ନିବେ ଓ ତା'ର ଭୌଗୋଳିକ ଅବସ୍ଥିତି ସମ୍ପର୍କରେ ଜାଣିବେ, ନିଜ ଜିଲାବିଷୟରେ ଏକ ବାସ୍ତବ ଧାରଣା ପାଇବେ । ପ୍ରଶ୍ନାବଳୀକୁ ଦେଖି ଜିଲା ବିଷୟରେ ବିଭିନ୍ନ ତଥ୍ୟ ଜାଣିବା ପାଇଁ ଶିକ୍ଷଣ କାର୍ଯ୍ୟ ପ୍ରସ୍ତୁତ କରାଯାଇ ପାରିବ ।

**ପ୍ରସ୍ତୁତି**

☞ ଶିକ୍ଷକ ପିଲାମାନଙ୍କୁ ନିଜ ଜିଲା ବିଷୟରେ ପଢ଼ାଇବାକୁ ଥିଲେ ମଧ୍ୟ ଅନ୍ୟ ଜିଲା ମାନଙ୍କ ସମ୍ବନ୍ଧରେ ଜାଣିଥିବା ଆବଶ୍ୟକତା ରହିଛି । ପିଲାଙ୍କୁ ନିଜ ଜିଲାର କୌଣସି ବିଷୟରେ ବୁଝାଇବାକୁ ଗଲାବେଳେ ଅନ୍ୟ ଜିଲ୍ଲାର ଉଦାହରଣ ବେଳେବେଳେ ଦିଅନ୍ତୁ । ଜିଲା ବିବରଣୀ ସମ୍ବଳିତ ତଥ୍ୟ ପୁସ୍ତିକା ସଂଗ୍ରହ, ନିଜ ଗ୍ରାମର ନକ୍ସା ଆର .ଆଇ ଅଫିସ୍‌ରୁ ସଂଗ୍ରହ ଏବଂ ଓଡ଼ିଶା ମାନଚିତ୍ର ଦେଖି ଜିଲାର ତାଲିକା କରିବେ ।

☞ ପିଲାମାନେ ନିଜ ଗାଁ ତଥା ଜିଲାର ନାମ ଜଣ ଜଣ କରି କହିବେ ଓ ନିଜ ଜିଲାର ମୁଖ୍ୟ ଜିନିଷ ବିଷୟରେ ଧାଡ଼ିଏ କିମ୍ବା ଦୁଇଧାଡ଼ି କହିବେ ।

**କାମ**

☞ ଓଡ଼ିଶାର ମାନଚିତ୍ର ଅଙ୍କନ କରିବା ଅଭ୍ୟାସ କରାନ୍ତୁ ।

☞ ଦିଗ ନିର୍ଣ୍ଣୟ ଓ ପଡ଼ୋଶୀ ରାଜ୍ୟ ସଂପର୍କରେ ଧାରଣା ଦିଅନ୍ତୁ ।

**ଅଧିକ ତଥ୍ୟ**

ସବୁ ପିଲା ନିଜ ଜିଲା ବିଷୟରେ ଜାଣିବେ । ଆଗ୍ରହୀ ପିଲାମାନେ ପଡ଼ୋଶୀ ବା ଅନ୍ୟାନ୍ୟ ଜିଲା ବିଷୟରେ ଜାଣି ପାରନ୍ତି ।

ଓଡ଼ିଶାର ବୃହତ୍ତମ ଗ୍ରାମ- ଭୁବନ (ଢେଙ୍କାନାଳ)

ଓଡ଼ିଶାର ବୃହତ୍ତମ ଜିଲା (ଆୟତନ)- ମୟୂରଭଞ୍ଜ

ବୃହତ୍ତମ ଜିଲା (ଲୋକସଂଖ୍ୟା)- ଗଂଜାମ

ଓଡ଼ିଶାର ବୃହତ୍ତମ ସଡ଼କ ପଥ- କଟକରୁ ମୋଟୁ

ଓଡ଼ିଶାର ବୃହତ୍ତମ ପର୍ବତ- ଦେଓମାଳି (କୋରାପୁଟ୍)

ଦୀର୍ଘତମ ନଦୀ ବନ୍ଧ-ହୀରାକୁଦ ବନ୍ଧ

ବୃହତ୍ତମ ଜଳପ୍ରପାତ- ଡୁଡୁମା

ବୃହତ୍ତମ ନଦୀ- ମହାନଦୀ

ବୃହତ୍ତମ ହ୍ରଦ- ଚିଲିକା

ବୃହତ୍ତମ ପ୍ଲାଟ୍‌ଫର୍ମ- ଖୋର୍ଦ୍ଧା

ଦୀର୍ଘତମ ଶିଳ୍ପ କାରଖାନା- ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ

୧୯୯୨ ଅକ୍ଟୋବର ୨ ତାରିଖରେ ଆମ ଜିଲା ମାନଙ୍କର ପୁନର୍ଗଠନ ହୋଇ ବର୍ତ୍ତମାନ ୩୦ଟି ଜିଲା ଅଛି ।

୩୦ ଟି ଜିଲାର ସାଧାରଣ ତଥ୍ୟ ଏଥି ସହିତ ସଂଲଗ୍ନ କରାଯାଇଛି ।

**ଦଳଗତ କାର୍ଯ୍ୟ**

ପିଲାମାନେ ୪ଟି ଦଳରେ ବସି ଗୋଟିଏ ଦଳ ଜିଲାର ମୁଖ୍ୟ ଫସଲ ବିଷୟରେ ଆଉ ଗୋଟିଏ ଦଳ କଳ କାରଖାନା, ଆଉ ଗୋଟିଏ ଦଳ ଭୂମି ରୂପ ଓ ଶେଷ ଦଳ ପର୍ବ ପର୍ବାଣି ଓ ପ୍ରସିଦ୍ଧ ସ୍ଥାନ ବିଷୟରେ ଲେଖିବେ ।



Digitized by PPRACHIN, SOA

- ☞ ଜିଲା ସଦର ମହକୁମା, ବ୍ଲକ, ଓ ଜିଲାର ମୋଟ ଲୋକସଂଖ୍ୟା ବିଷୟରେ ଧାରଣା ଦିଅନ୍ତୁ ।
- ☞ ଜିଲାର ମୁଖ୍ୟ ଫସଲ, ଜୀବିକା, ଖଣିଜ ପଦାର୍ଥ, ପ୍ରସିଦ୍ଧ ସ୍ଥାନ, ପର୍ବପର୍ବାଣି, ଲୋକଙ୍କ ଚାଲିଚଳନ ଇତ୍ୟାଦି ବିଷୟରେ ଧାରଣା ଦିଅନ୍ତୁ ।
- ☞ ପିଲାମାନେ ନିଜ ଗ୍ରାମର ନକ୍ସା ଅଙ୍କନ କରିବା ଶିଖିବେ ।
- ☞ ମାନଚିତ୍ରରେ ଜିଲାର ସଦର ମହକୁମା ଗୁଡ଼ିକୁ କଳା ବିନ୍ଦୁ ଚିହ୍ନ ଦେଇ ଚିହ୍ନଟ କରିବେ ।
- ☞ ମାନଚିତ୍ରରେ ଲାଲ୍ ବିନ୍ଦୁ ଦେଇ ସବ୍‌ଡିଭିଜନର ସଦର ମହକୁମାକୁ ଚିହ୍ନଟ କରିବେ ।
- ☞ ନିଜ ଜିଲାରେ ଥିବା ବ୍ଲକର ନାମ ଗୁଡ଼ିକୁ ପଚାରି ଲେଖିବେ ।
- ☞ ଜିଲାର ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ, ମନ୍ଦିର, କଳକାରଖାନା ଇତ୍ୟାଦି ବିଷୟରେ ବୁଝି ଲେଖିବେ ।
- ☞ ବହିରେ ଥିବା ପ୍ରଶ୍ନାବଳୀ ସମାଧାନ କରି ନିଜ ଜିଲା ସମ୍ପର୍କରେ ବିଭିନ୍ନ ତଥ୍ୟ ଜାଣିବେ ଓ ଅନ୍ୟ ପିଲାଙ୍କୁ ଜଣାଇବେ ।

**ପ୍ରକଳ୍ପ**

୧. ପିଲାମାନେ ନିଜ ଜିଲା ଦେଇ ଯାଇଥିବା ମୁଖ୍ୟ ସଡ଼କ ପଥ ଓ ରେଳପଥକୁ ଭିନ୍ନ ଭିନ୍ନ ରଙ୍ଗ ଦେଇ ମାନଚିତ୍ରରେ ଦେଖାଇବେ ।

୨. ନିଜ ଜିଲା ମଧ୍ୟରେ ଥିବା ନଦୀକୁ ମାନଚିତ୍ରରେ ନୀଳ ରଙ୍ଗ ଦେଇ ସୂଚାଇବେ ।

୩. ପ୍ରତି ପିଲା ବହି ମାପର ଖଣ୍ଡିଏ ଧଳା କାଗଜରେ ନିଜ ଜିଲାର ମାନଚିତ୍ର ଅଙ୍କନ କରି ବିଭିନ୍ନ ରଙ୍ଗ ସାହାଯ୍ୟରେ ବ୍ଲକ୍ ମାନଙ୍କୁ ଚିହ୍ନଟ କରିବେ । ଏହି ମାନଚିତ୍ରକୁ ବହିର ଶେଷ ପୃଷ୍ଠା ସହିତ ଯୋଡ଼ିବେ ।

୪. ପଡ଼ୋଶୀ ଯେକୌଣସି ଦୁଇଟି ଜିଲା ସହିତ ନିଜ ଜିଲାର ତୁଳନା କରି କି କି ସାମଞ୍ଜସ୍ୟ ରହିଛି ତାହାର ଏକ ବିବରଣୀ ପ୍ରସ୍ତୁତ କରିବେ ।



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ଢେଙ୍କାନାଳ<br>★ ଢେଙ୍କାନାଳ | ସବ୍‌ଡିଭିଜନ୍-୩ଟି<br>ବ୍ଲକ୍-୮ଟି<br>ପ୍ରଧାନ ସହର-ଢେଙ୍କାନାଳ | ପାହାଡ଼ିଆ ଓ ବଣ ଜଙ୍ଗଲରେ ପୂର୍ଣ୍ଣ<br>ପ୍ରଧାନ ନଦୀ- ବ୍ରାହ୍ମଣୀ<br>ଖଣିଜ ପଦାର୍ଥ- କ୍ରୋମାଇଟ୍ | କପିଳାସ, ସପ୍ତଶଯ୍ୟା, ଜୋରନ୍ଦା<br>ଗୋବିନ୍ଦପୁର (ସୂତାକଳ)<br>ଭୂବନ (କଂସା-ବାସନ)<br>ଢେଙ୍କାନାଳ (ଆଜବେଷ୍ଟସ୍ ତିଆରି କାରଖାନା) | ମୁଖ୍ୟ ଫସଲ- ଧାନ, ମାଣ୍ଡିଆ, ରାଶି, ଚିନାବାଦାମ, ଧୂଆଁପତ୍ର, ମକା<br>ମୁଖ୍ୟ ଜୀବିକା- କୃଷି ଓ ପଶୁପାଳନ<br>ପର୍ବପର୍ବାଣି- ଲକ୍ଷ୍ମୀପୂଜା, କାର୍ତ୍ତିକ ପୂର୍ଣ୍ଣିମା, ଜାଗର, ଦୋଳ, ବଡ଼ଓଷା, ମାଘ ପୂର୍ଣ୍ଣିମା | ୧,୦୬୫,୯୮୩ |
| ଅନୁଗୁଳ<br>★ ଅନୁଗୁଳ | ସବ୍‌ଡିଭିଜନ୍-୪ଟି<br>ବ୍ଲକ୍-୮ଟି<br>ପ୍ରଧାନ ସହର-ଅନୁଗୁଳ | ପାହାଡ଼ିଆ ଓ ବଣ ଜଙ୍ଗଲରେ ପୂର୍ଣ୍ଣ<br>ପ୍ରଧାନ ନଦୀ- ମହାନଦୀ, ବ୍ରାହ୍ମଣୀ<br>ଖଣିଜ ପଦାର୍ଥ- କୋଇଲା | ତାଳଚେର (ତାପଜ ବିଦ୍ୟୁତ୍ କେନ୍ଦ୍ର, କୋଇଲା ଖଣି)<br>ଅନୁଗୁଳ (ଆଲୁମିନିୟମ୍ କାରଖାନା) ଟିକରପଡ଼ା (କୁମ୍ଭୀର ସଂରକ୍ଷଣ ଓ ଗବେଷଣାକେନ୍ଦ୍ର) ଭୀମକୁଣ୍ଡ , ଦେଉଳଝରି | ମୁଖ୍ୟ ଫସଲ- ଧାନ, ମାଣ୍ଡିଆ, ମକା, ମୁଗ, ବିରି, ହରଡ଼, ଚିନାବାଦାମ, ଧୂଆଁପତ୍ର<br>ମୁଖ୍ୟ ଜୀବିକା- କୃଷି, ପଶୁପାଳନ,<br>ପର୍ବପର୍ବାଣି- ଦୁର୍ଗାପୂଜା, ଶିବରାତ୍ରି, ଦୀପାବଳି, ଦୋଳ, ରଜ, ମହରମ୍, ରମ୍‌ଜାନ୍ | ୧,୧୩୯,୩୪୧ |
| କଟକ<br>★ କଟକ | ସବ୍‌ଡିଭିଜନ୍-୩ଟି<br>ବ୍ଲକ୍-୧୪ଟି<br>ପ୍ରଧାନ ସହର-କଟକ | ଅଧିକାଂଶ ଅଞ୍ଚଳ ସମତଳ ଭୂମି, ପଶ୍ଚିମାଂଶ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ- ମହାନଦୀ, କାଠଯୋଡ଼ି, ଚିତ୍ରୋତ୍ପଳା, ଲୁଣା<br>ହ୍ରଦ- ଅଂଶୁପା<br>ଖଣିଜ ପଦାର୍ଥ- ଖଡ଼ି ପଥର | କଟକଚଣ୍ଡୀ, ଚର୍ଚ୍ଚିକା ମନ୍ଦିର, ଉଚ୍ଚାରିକା, ଧବଳେଶ୍ୱର, ବାରବାଟୀ ଦୁର୍ଗ, ନରାଜ (ଆନିକଟ) ଯୋବ୍ରା (ବ୍ୟାରେଜ) ଲଳିତ ଗିରିର ବୌଦ୍ଧ କୀର୍ତ୍ତି<br>ଚୌଦ୍ୱାର (କାଗଜକଳ, | ମୁଖ୍ୟ ଫସଲ- ଧାନ, ଝୋଟ, ଆଖୁ, ମୁଗ, ବିରି, ଚିନାବାଦାମ<br>ମୁଖ୍ୟ ଜୀବିକା- କୃଷି, ବାଣିଜ୍ୟ<br>ପର୍ବପର୍ବାଣି- ରଜ, ଦୁର୍ଗାପୂଜା, ଦୀପାବଳି, କାର୍ତ୍ତିକ ପୂର୍ଣ୍ଣିମା, ଦୋଳ, ଇଦ୍, ମହରମ୍, ବଡ଼ଦିନ | ୨,୩୪୦,୬୮୬ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| | | | ଲୁଗାକଳ, ଚାର୍ଜକ୍ରୋମ କାରଖାନା)<br>ଜଗତପୁର (ଶିଳ୍ପାଞ୍ଚଳ)<br>ବାରଙ୍ଗ (କାଚକାରଖାନା)<br>କଟକ (ତାରକସିକାମ) | | |
| ଯାଜପୁର<br>★ ପାଣିକୋଇଲି | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୧୦ଟି<br>ପ୍ରଧାନ ସହର- ଯାଜପୁର | କେତେକ ଅଞ୍ଚଳ ପାହାଡ଼ିଆ ଓ କେତେକ ଅଞ୍ଚଳ ସମତଳ<br>ପ୍ରଧାନ ନଦୀ- ବୈତରଣୀ, ବ୍ରାହ୍ମଣୀ, ଖରସୁଆଁ, ବିରୂପା<br>ଖଣିଜ ପଦାର୍ଥ- ଲୁହା ପଥର, ନିକେଲ, କ୍ରୋମାଇଟ୍ | ବିରଜା ଠାକୁରାଣୀ, ଚଣ୍ଡିଖୋଲ, ଛତିଆ ବଟ, ରତ୍ନଗିରି, ଉଦୟଗିରି<br>ଯାଜପୁର ରୋଡ଼ (ଫେରୋକ୍ରୋମ କାରଖାନା)<br>ଧାନମଣ୍ଡଳ (ଝୋଟକଳ)<br>ସୁକିନ୍ଦା (କ୍ରୋମାଇଟ୍ ଖଣି) | ମୁଖ୍ୟ ଫସଲ- ଧାନ, ମୁଗ, ବିରି, କୋଳଥ, ଚିନାବାଦାମ<br>ମୁଖ୍ୟ ଜୀବିକା- କୃଷି ଓ ବାଣିଜ୍ୟ<br>ପର୍ବପର୍ବାଣି- ରଜ, ଦଶହରା, ଦୋଳ, ମହରମ୍, ଇଦ୍, ମକର, ଚୈତ୍ରପୂର୍ଣ୍ଣିମା | ୧,୬୨୨,୮୬୮ |
| ଜଗତସିଂହପୁର<br>★ ଜଗତସିଂହପୁର | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୮ଟି<br>ପ୍ରଧାନ ସହର- ଜଗତସିଂହପୁର | କେତେକ ଅଞ୍ଚଳ ପାହାଡ଼ିଆ, ଆଉ କେତେକ ଅଞ୍ଚଳ ଉର୍ବର ଓ ସମତଳ<br>ପ୍ରଧାନନଦୀ- ପାଇକା, ମହାନଦୀ, ଦେବୀ, ବିଲୁଆଖାଇ | ପାରାଦ୍ୱୀପ ବନ୍ଦର, ଝଙ୍କଡ଼ ଶାରଳା ମନ୍ଦିର, ଗାରେଇର ଜଗନ୍ନାଥ ମନ୍ଦିର<br>ତିର୍ତ୍ତୋଲ (ସୂତାକଳ)<br>ପାରାଦ୍ୱୀପ (ସାରକାରଖାନା, ବନ୍ଦର) | ମୁଖ୍ୟ ଫସଲ- ଧାନ, ଲଙ୍କା, ନଡ଼ିଆ, ଚିନାବାଦାମ, କାଜୁବାଦାମ୍, ମୁଗ, ବିରି, ପନିପରିବା<br>ମୁଖ୍ୟ ଜୀବିକା- କୃଷି<br>ପର୍ବପର୍ବାଣି- ରଜ, ଦଶହରା, ଦୀପାବଳି, ଇଦ୍, ମହରମ୍, ବଡ଼ଦିନ, ଦୋଳ | ୧,୦୫୬,୫୫୬ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| କେନ୍ଦ୍ରାପଡ଼ା<br>* କେନ୍ଦ୍ରାପଡ଼ା | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୯ଟି<br>ପ୍ରଧାନ ସହର- କେନ୍ଦ୍ରାପଡ଼ା | ସମତଳ ଭୂମି ଓ ନଦୀନାଳ ପୂର୍ଣ୍ଣ<br>ପ୍ରଧାନ ନଦୀ- ମହାନଦୀ, ବ୍ରାହ୍ମଣୀ, ଚିତ୍ରୋତ୍ପଳା, ଖରସୁଆଁ, ଲୁଣା, ପାଇକା | ବଳଦେବଜୀଉ ମନ୍ଦିର, ବରାହଜୀଉ ମନ୍ଦିର, ଭିତର କନିକା, ଅଭୟାରଣ୍ୟ, ବତୀଘର (ଜମ୍ବୁ)<br>କେନ୍ଦ୍ରାପଡ଼ା (ଲୁଗାକଳ) | ମୁଖ୍ୟ ଫସଲ- ଧାନ, ଝୋଟ, ଆଳୁ,ଆଖୁ, ମୁଗ, ବିରି, ଚିନାବାଦାମ<br>ମୁଖ୍ୟ ଜୀବିକା- କୃଷି<br>ପର୍ବପର୍ବାଣି- ରଜ, ଦଶହରା, ଦୀପାବଳି, ଲକ୍ଷ୍ମୀପୂଜା, ମହରମ୍, ଇଦ୍, ବଡ଼ଦିନ, ରଥଯାତ୍ରା | ୧,୩୦୧,୮୫୬ |
| ବାଲେଶ୍ୱର<br>* ବାଲେଶ୍ୱର | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୧୨ଟି<br>ପ୍ରଧାନ ସହର- ବାଲେଶ୍ୱର | ଅଧିକାଂଶ ଅଞ୍ଚଳ ସମତଳ, ପଶ୍ଚିମାଂଶର ମଧଭାଗ ପାହାଡ଼ିଆ ଅଞ୍ଚଳ<br>ପ୍ରଧାନ ନଦୀ- ସୁବର୍ଣ୍ଣରେଖା ଓ ବୁଢ଼ାବଳଙ୍ଗ<br>ଖଣିଜ ପଦାର୍ଥ- ଲୁହାପଥର, କ୍ରୋମାଇଟ୍, ଟାଲ୍‌କ | ରେମୁଣାର କ୍ଷୀରଚୋରା ଗୋପୀନାଥ ମନ୍ଦିର, ଭୋଗରାଇର ଚନ୍ଦନେଶ୍ୱର, ରାଇବଣିଆ ଦୁର୍ଗ<br>ଚାନ୍ଦିପୁର (ବନ୍ଦର ଓ କ୍ଷେପଣାସ୍ତ୍ର ଘାଟି) | ମୁଖ୍ୟ ଫସଲ- ଧାନ, ନଡ଼ିଆ, ପାନ, ଝୋଟ<br>ମୁଖ୍ୟ ଜୀବିକା- କୃଷି, ମାଛଧରା<br>ପର୍ବପର୍ବାଣି- ଦଶହରା, ଦୋଳ, ରଜ, ମହରମ୍, ଦୀପାବଳି, କାଳୀପୂଜା | ୨,୦୨୩,୦୫୬ |
| ଭଦ୍ରକ<br>* ଭଦ୍ରକ | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୭ଟି<br>ପ୍ରଧାନ ସହର- ଭଦ୍ରକ | ଉର୍ବର ସମତଳ ଅଞ୍ଚଳ<br>ପ୍ରଧାନ ନଦୀ- ସାଳନ୍ଦୀ, ବୈତରଣୀ | ଆରଡ଼ି ଆଖଣ୍ଡଳମଣି ଶିବ ମନ୍ଦିର, ଧାମରା ବନ୍ଦର, ଭଦ୍ରକର ଚାର୍ଜକ୍ରୋମ କାରଖାନା | ମୁଖ୍ୟ ଫସଲ- ଧାନ, ନଡ଼ିଆ, ପାନ, ଝୋଟ<br>ମୁଖ୍ୟ ଜୀବିକା- କୃଷି, ମାଛଧରା<br>ପର୍ବପର୍ବାଣି- ରଜ, ମହରମ୍, ରାକ୍ଷୀପୂର୍ଣ୍ଣିମା, ଇଦ୍, ଦଶହରା, ଦୋଳ | ୧,୩୩୨,୨୪୯ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ପୁରୀ<br>★ ପୁରୀ | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍- ୧୧ଟି<br>ପ୍ରଧାନ ସହର- ପୁରୀ | ଉର୍ବର, ସମତଳ ଅଞ୍ଚଳ<br>ପ୍ରଧାନ ନଦୀ- ଦେବୀ, ଦୟା, ଭାର୍ଗବୀ, କୁଶଭଦ୍ରା ହ୍ରଦ- ଚିଲିକା | ପୁରୀର ଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟ ମନ୍ଦିର, ଚିଲିକାର କାଳିଜାଈ ମନ୍ଦିର, ସାକ୍ଷୀଗୋପାଳର ଗୋପୀନାଥ ମନ୍ଦିର<br>ପିପିଲି (ଚାନ୍ଦୁଆ ତିଆରି) | ମୁଖ୍ୟ ଫସଲ- ଧାନ, ନଡ଼ିଆ, ଗୁଆ, ପାନ, ଚିନାବାଦାମ, ଆଖୁ, କାଜୁବାଦାମ<br>ମୁଖ୍ୟ ଜୀବିକା- କୃଷି, ମାଛଧରା<br>ପର୍ବପର୍ବାଣି- ରଥଯାତ୍ରା, ମାଘସପ୍ତମୀ, ମକରମେଳା, ଝାମୁଯାତ୍ରା, ଅଁଳାନବମୀ, ଦୋଳ, କାର୍ତ୍ତିକ ପୂର୍ଣ୍ଣିମା | ୧,୪୯୮,୬୦୪ |
| ଖୋର୍ଦ୍ଧା<br>★ ଖୋର୍ଦ୍ଧା | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍- ୧୦ଟି<br>ପ୍ରଧାନ ସହର- ଭୁବନେଶ୍ୱର | କେତେକ ଅଞ୍ଚଳ ଜଙ୍ଗଲ ଓ ପାହାଡ଼ିଆ, ଆଉ କେତେକ ଅଞ୍ଚଳ ସମତଳ<br>ପ୍ରଧାନ ନଦୀ- କୁଆଖାଇ, ଦୟା, କୁଶଭଦ୍ରା, ଶାଳିଆ<br>ଖଣିଜ ପଦାର୍ଥ- ଖଡ଼ିପଥର | ରାଜ୍ୟ ସଚିବାଳୟ, ବିଧାନସଭା, ରାଜଭବନ, ଦୂରଦର୍ଶନ କେନ୍ଦ୍ର, ରାଜ୍ୟ ସଂଗ୍ରହାଳୟ, ପଠାଣିସାମନ୍ତ ପ୍ଲାନେଟୋରିୟମ୍, ବିମାନଘାଟି, ଲିଙ୍ଗରାଜ ମନ୍ଦିର, ଖଣ୍ଡଗିରି, ଧଉଳି ପାହାଡ଼, ନନ୍ଦନକାନନ, କେଦାରଗୌରୀ, ରାଜରାଣୀ ମନ୍ଦିର, ବାଣପୁର ଭଗବତୀ, ଖୋର୍ଦ୍ଧାର ବରୁଣେଇ, କାଇପଦରର ବୁଖାରୀ ପୀଠ, ଅତ୍ରିର ଉଷ୍ଣ ପ୍ରସ୍ରବଣ କେନ୍ଦ୍ର, ଚିଲିକା ହ୍ରଦ, ମଞ୍ଚେଶ୍ୱର ରେଳଡବା ତିଆରି କାରଖାନା | ମୁଖ୍ୟ ଫସଲ- ଧାନ, ମୁଗ, ବିରି, ନଡ଼ିଆ, ଆଖୁ, ଚିନାବାଦାମ<br>ମୁଖ୍ୟ ଜୀବିକା- କୃଷି, ବାଣିଜ୍ୟ, ମାଛଧରା<br>ପର୍ବପର୍ବାଣି- ଚନ୍ଦନଯାତ୍ରା, ରଜ, ଝୁଲଣ ଯାତ୍ରା, ଦୋଳ, ମକର, କୁମାରପୂର୍ଣ୍ଣିମା, କାର୍ତ୍ତିକପୂର୍ଣ୍ଣିମା | ୧,୮୭୪,୪୦୫ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ନୟାଗଡ଼<br>★ ନୟାଗଡ଼ | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୮ଟି<br>ପ୍ରଧାନ ସହର- ନୟାଗଡ଼ | କେତେକ ଅଞ୍ଚଳ ସମତଳ, ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ- ମହାନଦୀ, କୁଆଁରିଆ, କୁସୁମି<br>ଖଣିଜ ପଦାର୍ଥ- ଗ୍ରାଫାଇଟ୍ | ଶରଣକୁଳର ଲଡୁବାବା ମନ୍ଦିର, ଓଡ଼ଗାଁର ରଘୁନାଥ ମନ୍ଦିର, କଣ୍ଟିଲୋର ନୀଳମାଧବ ମନ୍ଦିର, ରଣପୁରର ମଣିନାଗ ଦୁର୍ଗା ମନ୍ଦିର<br>କଣ୍ଟିଲୋ (କଂସାବାସନ)<br>ଇଟାମାଟି (ପ୍ରଧାନ ବ୍ୟବସାୟ କେନ୍ଦ୍ର) | ପ୍ରଧାନ ଫସଲ- ଧାନ, ଆଖୁ, ଚିନାବାଦାମ, ଡାଲିଜାତୀୟ ଶସ୍ୟ,<br>ମୁଖ୍ୟ ଜୀବିକା- କୃଷି, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ଚନ୍ଦନ ଯାତ୍ରା, ଝୁଲଣଯାତ୍ରା, ଦୋଳ, କୁମାର ପୂର୍ଣ୍ଣିମା, ଜାଗର | ୮୬୩,୯୩୪ |
| ବଲାଙ୍ଗୀର<br>★ ବଲାଙ୍ଗୀର | ସବ୍‌ଡିଭିଜନ୍- ୩ଟି<br>ବ୍ଲକ୍-୧୪ଟି<br>ପ୍ରଧାନ ସହର- ବଲାଙ୍ଗୀର | ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ- ତେଲ, ସୁକତେଲ, ଅଙ୍ଗ, ଇନ୍ଦ୍ର<br>ଖଣିଜ ପଦାର୍ଥ- ଗ୍ରାଫାଇଟ୍, ବକ୍‌ସାଇଟ୍, ମାଙ୍ଗାନିଜ୍, ଦସ୍ତା, ରତ୍ନପଥର | ହରିଶଙ୍କର, ଚଉଷଠି ଯୋଗିନୀ ମନ୍ଦିର ଓ ଶିବ ମନ୍ଦିର<br>ସଇଂତଳା (ଗୋଳାବାରୁଦ କାରଖାନା)<br>ଟିଟିଲାଗଡ଼ (ଚମଡ଼ା ଓ ଗ୍ରାଫାଇଟ୍ କାରଖାନା) | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ମକା, ବିରି, ହରଡ଼, ଗହମ, ରାଶି, ସୋରିଷ, କପା ଧୂଆଁପତ୍ର<br>ମୁଖ୍ୟ ଜୀବିକା- ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ, ଖଣିରେ କାମ<br>ପର୍ବପର୍ବାଣି- ନୂଆଖାଇ, ଭାଇଜିଉନ୍ତିଆ, ପୁଅଜିଉନ୍ତିଆ, ପୌଷ ପୂର୍ଣ୍ଣିମା, ଦୋଳ, ଇଦ୍, ମହରମ୍, ବଡ଼ଦିନ । | ୧,୩୩୫,୭୬୦ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ସୋନପୁର<br>* ସୋନପୁର | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୬ଟି<br>ପ୍ରଧାନ ସହର- ସୋନପୁର | କେତେକ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲ ପୂର୍ଣ୍ଣ, ଆଉକିଛି ଅଞ୍ଚଳ ସମତଳ ।<br>ପ୍ରଧାନ ନଦୀ- ମହାନଦୀ, ସୁକତେଲ, ତେଲ, ଅଙ୍ଗ<br>ଖଣିଜ ପଦାର୍ଥ- ଚିନାମାଟି, ରତ୍ନପଥର | ନୃସିଂହନାଥ ମନ୍ଦିର, ସୁବର୍ଣ୍ଣମେରୁ ମନ୍ଦିର, ବିନିକା ନିକଟସ୍ଥ ତାରପୁର ଗଡ଼ର ଧ୍ୱଂସାବଶେଷ ସୋନପୁର, ପାଟ, ତରଭା, ରୂପାକାମ, କଂସାବାସନ | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ମକା, ଆଖୁ, ମୁଗ, ବିରି, ଗହମ, ରାଶି, ସୋରିଷ, କପା, ଧୂଆଁପତ୍ର<br>ମୁଖ୍ୟ ଜୀବିକା- କୃଷି ଓ ପଶୁପାଳନ<br>ପର୍ବପର୍ବାଣି- ନୂଆଖାଇ, ଭାଇଜିଉନ୍ତିଆ, ପୁଅଜିଉନ୍ତିଆ, ପୌଷପୂର୍ଣ୍ଣିମା | ୫୪୦,୬୫୯ |
| ସମ୍ବଲପୁର<br>* ସମ୍ବଲପୁର | ସବ୍‌ଡିଭିଜନ୍- ୩ଟି<br>ବ୍ଲକ୍-୯ଟି<br>ପ୍ରଧାନ ସହର- ସମ୍ବଲପୁର | ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ ଅଳ୍ପ କେତେକ ଅଞ୍ଚଳ ସମତଳ ।<br>ପ୍ରଧାନ ନଦୀ- ମହାନଦୀ<br>ଖଣିଜ ପଦାର୍ଥ- ଅଗ୍ନିନିରୋଧକ ମାଟି, ଖଡ଼ି ପଥର, ରତ୍ନପଥର | ହୀରାକୁଦ ନଦୀବନ୍ଧ, ସମଲେଶ୍ୱରୀ ମନ୍ଦିର, ଉଷାକୋଠି ଅଭୟାରଣ୍ୟ, ହୀରାକୁଦଠାରେ ଆଲୁମିନିୟମ କାରଖାନା | ପ୍ରଧାନ ଫସଲ- ଧାନ, ଗହମ, ବାଜରା, ଚିନାବାଦାମ, ଆଖୁ<br>ମୁଖ୍ୟ ଜୀବିକା- କୃଷି<br>ପର୍ବପର୍ବାଣି- ଶୀତଳ ଷଷ୍ଠୀ, କରମା, ନୂଆଖାଇ, କୁମାର ପୂର୍ଣ୍ଣିମା, ପୌଷପୂର୍ଣ୍ଣିମା<br>ସମ୍ବଲପୁରୀ ଗୀତ, ଡାଲ୍‌ଖାଇ ନାଚ | ୯୨୮,୮୮୯ |
| ବରଗଡ଼<br>* ବରଗଡ଼ | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୧୨ଟି<br>ପ୍ରଧାନ ସହର- ବରଗଡ଼ | କେତେକ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ- ମହାନଦୀ, ଅଙ୍ଗ<br>ଖଣିଜ ପଦାର୍ଥ- ଚୂନପଥର, ଗ୍ରାଫାଇଟ୍, ବକ୍‌ସାଇଟ୍, ସୀସା, ଦସ୍ତା | ନୃସିଂହନାଥ, ଧନୁଯାତ୍ରା, ଗନ୍ଧମାର୍ଦ୍ଦନ ପର୍ବତ<br>ଚିନିକଳ, ସିମେଣ୍ଟ କାରଖାନା ଚୂନପଥର, ଗ୍ରାଫାଇଟ୍, ବକ୍‌ସାଇଟ୍, ଖଡ଼ିପଥର, ସୀସା, ଦସ୍ତା | ପ୍ରଧାନ ଫସଲ- ଧାନ, ଗହମ, ବାଜରା, ଚିନାବାଦାମ, ଆଖୁ, କପା ଓ ପନିପରିବା<br>ମୁଖ୍ୟ ଜୀବିକା- କୃଷି<br>ପର୍ବପର୍ବାଣି- ଧନୁଯାତ୍ରା, କୁମାରପୂଜା, ଦଶହରା, ନୃସିଂହ ଚତୁର୍ଦ୍ଦଶୀ, ପୌଷ ପୂର୍ଣ୍ଣିମା, କୁମାର ପୂର୍ଣ୍ଣିମା, ନୂଆଖାଇ | ୧,୩୪୫,୬୦୧ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ଦେଓଗଡ଼<br>★ ଦେଓଗଡ଼ | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୩ଟି<br>ପ୍ରଧାନ ସହର- ଦେଓଗଡ଼ | ପାହାଡ଼ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ - ବ୍ରାହ୍ମଣୀ | ଗୋପୀନାଥ ମନ୍ଦିର, ଜଗନ୍ନାଥ ମନ୍ଦିର, ଗୋକର୍ଣ୍ଣେଶ୍ୱର ମନ୍ଦିର ଏବଂ ପ୍ରଧାନପାଟ ଜଳପ୍ରପାତ | ପ୍ରଧାନ ଫସଲ- ଧାନ, ଗହମ, ଚିନାବାଦାମ, ସୋରିଷ<br>ମୁଖ୍ୟ ଜୀବିକା-କୃଷି, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- କରମା ପୂଜା, ରଥଯାତ୍ରା, ନୂଆଖାଇ, ମହୁଲ ଗୁଣ୍ଡି, କୁମାର ପୂର୍ଣ୍ଣିମା, ପୌଷ ପୂର୍ଣ୍ଣିମା | ୨୭୪,୦୯୫ |
| କଳାହାଣ୍ଡି<br>★ ଭବାନୀପାଟଣା | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୧୩ଟି<br>ପ୍ରଧାନ ସହର- ଭବାନୀପାଟଣା | ଅଳ୍ପ ଅଂଶ ସମତଳ ଓ ବେଶି ଅଂଶ ପାହାଡ଼ିଆ ଓ ଘନ ଜଙ୍ଗଲରେ ପୂର୍ଣ୍ଣ<br>ପ୍ରଧାନନଦୀ- ଇନ୍ଦ୍ରାବତୀ<br>ଖଣିଜ ପଦାର୍ଥ- ଚୂନପଥର, ସ୍ଫଟିକ ପଥର, ବକ୍‌ସାଇଟ୍, ଗ୍ରାଫାଇଟ୍, ମାଣିକ୍ୟ | ବେଲଖଣ୍ଡି, ଆମପାଣି, ଅସୁର ଗଡ଼, ଗୁଡ଼ହାଣ୍ଡି, ପାହାଡ଼ର ଗୁମ୍ଫା, ରାବଣଧାର ଓ ଫୁରଲୀଝରଣ, ଜଳପ୍ରପାତ<br>ଥୁଆମୂଳ- ରାମପୁର ଓ ଲାଞ୍ଜିଗଡ଼,ଗ୍ରୀଷ୍ମନିବାସ କେନ୍ଦ୍ର<br>କାଠକାମ- ପ୍ରଧାନ କୁଟୀର ଶିଳ୍ପ | ପ୍ରଧାନ ଫସଲ- ଧାନ, ମକା, ବାଜରା, ମାଣ୍ଡିଆ, ସୋରିଷ, ରାଶି, ଆଖୁ, ପାଳୁଅ<br>ମୁଖ୍ୟ ଜୀବିକା- କୃଷି, ପଶୁପାଳନ, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ନୂଆଖାଇ, ଦଶହରା, ରାକ୍ଷୀପୂର୍ଣ୍ଣିମା, ଚଇତି ପର୍ବ, ମାଙ୍ଗୀପର୍ବ, ଘୁମୁରା ନାଚ | ୧,୩୩୪,୩୭୨ |
| ନୂଆପଡ଼ା<br>★ ନୂଆପଡ଼ା | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୫ଟି<br>ପ୍ରଧାନ ସହର- ନୂଆପଡ଼ା | ଅଳ୍ପ ଅଂଶ ସମତଳ, ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଘନ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ- ଇନ୍ଦ୍ର, ଉଦନ୍ତି,ସୁନ୍ଦର<br>ଖଣିଜ ପଦାର୍ଥ- ବକ୍‌ସାଇଟ୍, ମାଙ୍ଗାନିଜ୍, ଗ୍ରାଫାଇଟ୍ | ଯୋଗୀମ ଗୁମ୍ଫା, ପାତାଳ ଗଙ୍ଗା, ଦଧିବାମନ ମନ୍ଦିର, ପଟଳେଶ୍ୱର ମନ୍ଦିର, ମାନିକଗଡ଼ ଓ କୁମନଗଡ଼ ଦୁର୍ଗର ଧ୍ୱଂସାବଶେଷ ମାରାଗୁଡ଼ାର ପୁରାତନ ମୂର୍ତ୍ତି<br>କାଠକାମ- ପ୍ରଧାନ କୁଟୀର | ପ୍ରଧାନ ଫସଲ- ଧାନ, ମକା, ବାଜରା, ମାଣ୍ଡିଆ, ସୋରିଷ, ରାଶି, ଆଳୁ,ପାଳୁଅ<br>ମୁଖ୍ୟ ଜୀବିକା- କୃଷି ଓ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ରାକ୍ଷୀପୂର୍ଣ୍ଣିମା, ନୂଆଖାଇ, ଦଶହରା, ପୌଷପୂର୍ଣ୍ଣିମା, ପୁଅଜିଉନ୍ତିଆ, ଭାଇଜିଉନ୍ତିଆ, ମାଘପର୍ବ, ଚଇତିପର୍ବ, | ୫୩୦,୫୨୪ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ଗଞ୍ଜାମ<br>★ ଛତ୍ରପୁର | ସବ୍‌ଡିଭିଜନ୍- ୩ଟି<br>ବ୍ଲକ୍-୨୨ଟି<br>ପ୍ରଧାନସହର- ବ୍ରହ୍ମପୁର | ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ-ଚାଷିକୁଳିଆ, ବାହୁଦା, ବଡ଼ନଦୀ<br>ଖଣିଜ ପଦାର୍ଥ- ମୋନାଜାଇଟ୍, ଗ୍ରାଫାଇଟ୍ | ତାରାତାରେଣୀ ପୀଠ, ଜଉଗଡ଼ର ଶିଳାଲିପି, ତପ୍ତପାଣି (ଉଷ୍ଣପ୍ରସ୍ରବଣ କେନ୍ଦ୍ର) ବତୀଘର, ନିର୍ମଳଝର, ନାରାୟଣୀ ଖୋଲ, ବୁଦ୍ଧଖୋଲ ଆସିକା, ଚିକିଳ, ଗୋପାଳପୁର - ବନ୍ଦର ପାଟଲୁଗା, କଂସାବାସନ, ପିତଳ ମାଛ | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ଆଖୁ, ରାଶି, ଚିନାବାଦାମ<br>ମୁଖ୍ୟ ଜୀବିକା- କୃଷି, ପଶୁପାଳନ, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ଠାକୁରାଣୀ ଯାତ୍ରା, କୁମାରପୂର୍ଣ୍ଣିମା, ଦୀପାବଳୀ, ଦୋଳ ପୂର୍ଣ୍ଣିମା, ମକର, ମେରୁ ସଂକ୍ରାନ୍ତି, କାର୍ତ୍ତିକ ପୂର୍ଣ୍ଣିମା | ୩,୧୩୬,୯୩୭ |
| ଗଜପତି<br>★ ପାରଳାଖେମୁଣ୍ଡି | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୭ଟି<br>ପ୍ରଧାନସହର- ପାରଳାଖେମୁଣ୍ଡି | ଅଧିକାଂଶ ଅଞ୍ଚଳ ପାହାଡ଼ିଆ, ପଶ୍ଚିମ ଭାଗ ଜଙ୍ଗଲରେ ପୂର୍ଣ୍ଣ<br>ପ୍ରଧାନ ନଦୀ- ମହେନ୍ଦ୍ର ତନୟା | ପାରଳାଖେମୁଣ୍ଡି ରାଜବାଟୀ, ମହେନ୍ଦ୍ରଗିରିର ମନ୍ଦିର ସମୂହ,ବସନ୍ତ ନିବାସ<br>ପାରଳାଖେମୁଣ୍ଡି ଶିଙ୍ଗକାମ | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ଆଖୁ, ସୋରିଷ, ରାଶି, ଚିନାବାଦାମ, ଲଙ୍କା<br>ମୁଖ୍ୟ ଜୀବିକା- କୃଷି, କୁଟୀର ଶିଳ୍ପ, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ ।<br>ପର୍ବପର୍ବାଣି- ଠାକୁରାଣୀ ଯାତ୍ରା, କୁମାରପୂର୍ଣ୍ଣିମା, ଦୀପାବଳୀ, ମକର ଦୋଳ | ୫୧୮,୪୪୮ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| କୋରାପୁଟ<br>★ କୋରାପୁଟ | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୧୪ଟି<br>ପ୍ରଧାନସହର- କୋରାପୁଟ | ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ । ଓଡ଼ିଶାର ଉଚ୍ଚତମ ପର୍ବତ ଦେଓମାଳି ଏହି ଜିଲ୍ଲାରେ ଅବସ୍ଥିତ<br>ପ୍ରଧାନନଦୀ- ଇନ୍ଦ୍ରାବତୀ, ମାଛକୁଣ୍ଡ,କୋଲାବ ଖଣିଜ ପଦାର୍ଥ, ବକ୍‌ସାଇଟ୍, ଚୂନପଥର, ଗ୍ରାଫାଇଟ୍, ଚିନାମାଟି, ମାଙ୍ଗାନିଜ୍, ଅଭ୍ର, ଡୋଲାମାଇଟ୍ | -ଗୁପ୍ତେଶ୍ୱର ମନ୍ଦିର, ବାଗ୍ରା ଜଳପ୍ରପାତ, ଡୁଡୁମା ଜଳପ୍ରପାତ<br>-କୋୟା ଓ ପରଜା ନାଚ<br>- ମାଛକୁଣ୍ଡଠାରେ ଜଳ-ବିଦ୍ୟୁତ୍ ଯୋଜନା<br>ସୁନାବେଡ଼ାଠାରେ ଉଡ଼ାଜାହାଜ କାରଖାନା ଓ ଦାମନଯୋଡ଼ିଠାରେ ଆଲୁମିନା କାରଖାନା | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ମକା, ବାଜରା, ଆଖୁ, ହଳଦୀ, ସୋରିଷ, ଚିନାବାଦାମ, ଧୂଆଁପତ୍ର<br>ମୁଖ୍ୟ ଜୀବିକା- କୃଷି, ପଶୁପାଳନ, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି-- ପୌଷପୂର୍ଣ୍ଣିମା, ଦୋଳ, ଚଇତିପର୍ବ | ୧,୧୭୭,୯୫୪ |
| ମାଲ୍‌କାନାଗିରି<br>★ ମାଲ୍‌କାନାଗିରି | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୭ଟି<br>ପ୍ରଧାନସହର- ମାଲ୍‌କାନାଗିରି | ଅଧିକାଂଶ ଅଞ୍ଚଳ ପାହାଡ଼ିଆ ଓ ଘନ ଜଙ୍ଗଲପୂର୍ଣ୍ଣ ।<br>ପ୍ରଧାନ ନଦୀ- ସାବରୀ (କୋଲାବ) ସିଲେରୁ<br>ଖଣିଜ ପଦାର୍ଥ- ଚୂନପଥର, ଆଜ୍‌ବେଷ୍ଟସ୍ | ବାଲିମେଳା ଜଳବିଦ୍ୟୁତ୍ ଯୋଜନା, ଚିତ୍ରକୋଣ୍ଡା ବନ୍ଧ, ସପ୍ତଧାରା | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ମକା, ବାଜରା, କାନ୍ଦୁଲ, ସୋରିଷ<br>ମୁଖ୍ୟ ଜୀବିକା- କୃଷି, ପଶୁପାଳନ, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ପୌଷପୂର୍ଣ୍ଣିମା, ଦୋଳ, ଚଇତିପର୍ବ | ୪୮୦,୨୩୨ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ରାୟଗଡ଼ା<br>★ ରାୟଗଡ଼ା | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୧୧ଟି<br>ପ୍ରଧାନସହର- ରାୟଗଡ଼ା | କେତେକ ଅଞ୍ଚଳ ପାହାଡ଼ିଆ ଓ ଘନ ଜଙ୍ଗଲପୂର୍ଣ୍ଣ.<br>ପ୍ରଧାନ ନଦୀ- ବଂଶଧାରା, ନାଗବଳୀ<br>ଖଣିଜପଦାର୍ଥ- ବକ୍ସାଇଟ୍, ମାଙ୍ଗାନିଜ୍, ଗ୍ରାଫାଇଟ୍ | ମାଲିକେଶ୍ୱର ମନ୍ଦିର, ମିନା-ଝୋଲା (ଶିବରାତ୍ରି ମେଳା ପାଇଁ ପ୍ରସିଦ୍ଧ), କାଶିପୁର (ଗ୍ରୀଷ୍ମନିବାସ) ଥିରୁଭାଲି-ଫେରୋସିଲିକନ୍ କାରଖାନା<br>ରାୟଗଡ଼ା- କାଗଜକଳ, ଚିନିକଳ | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, ମକା, ବାଜରା, ସୁଆଁ, ଆଖୁ, ଚିନାବାଦାମ୍, ସୋରିଷ, ହଳଦୀ, ପାଳୁଅ, ଧୂଆଁପତ୍ର<br>ମୁଖ୍ୟ ଜୀବିକା- କୃଷି ଓ ପଶୁପାଳନ<br>ପର୍ବପର୍ବାଣି- ପୌଷପୂର୍ଣ୍ଣିମା, ଦୋଳ, ଚଇତି ପର୍ବ, ମକର, ବଡ଼ଦିନ, କୁମାରପୂର୍ଣ୍ଣିମା | ୮୨୩,୦୧୯ |
| ନବରଙ୍ଗପୁର<br>★ ନବରଙ୍ଗପୁର | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୧୦ଟି<br>ପ୍ରଧାନସହର- ନବରଙ୍ଗପୁର | କେତେକ ଅଞ୍ଚଳ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ<br>ପ୍ରଧାନ ନଦୀ- ଇନ୍ଦ୍ରାବତୀ, ତେଲ<br>ଖଣିଜପଦାର୍ଥ- ଚିନାମାଟି, ଅଭ୍ର, ଲୁହାପଥର | ପାପଡ଼ାହାଣ୍ଡିର ଶିବ ମନ୍ଦିର | ପ୍ରଧାନ ଫସଲ- ଧାନ ଅଳସୀ, ମକା, କାନ୍ଦୁଲ, ବାଜରା, ଆଖୁ, ସୋରିଷ, ହଳଦୀ<br>ମୁଖ୍ୟ ଜୀବିକା- କୃଷି କାର୍ଯ୍ୟ<br>ପର୍ବପର୍ବାଣି- ଶିବରାତ୍ରି, ମକର, ଦୋଳ, ଚଇତି ପର୍ବ, ନୂଆଖାଇ, ଇଦ୍, ମହରମ୍, ବଡ଼ଦିନ, ପୌଷପୂର୍ଣ୍ଣିମା, କୁମାରପୂର୍ଣ୍ଣିମା | ୧,୦୧୮,୧୭୧ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ମୟୂରଭଞ୍ଜ<br>★ ବାରିପଦା | ସବ୍‌ଡିଭିଜନ୍- ୪ଟି<br>ବ୍ଲକ୍-୨୬ଟି<br>ପ୍ରଧାନସହର- ବାରିପଦା | ପଶ୍ଚିମଭାଗ ପାହାଡ଼ିଆ ଓ ପୂର୍ବଭାଗ ସମତଳ ।<br>ପ୍ରଧାନ ନଦୀ- ବୁଢ଼ାବଳଙ୍ଗ, ଶାଳନ୍ଦୀ<br>ଖଣିଜ ପଦାର୍ଥ- ଲୁହାପଥର, ମାଙ୍ଗାନିଜ୍, ଚିନାମାଟି, ତମ୍ବା, ସୀସା, ସ୍ଫଟିକ ପଥର, ଆଜ୍‌ବେଷ୍ଟସ୍ | ବାରିପଦାର ଜଗନ୍ନାଥ ମନ୍ଦିର, ଖିଚିଂର କିଚକେଶ୍ୱରୀ ମନ୍ଦିର, ଶିମିଳିପାଳ ଅଭୟାରଣ୍ୟ, ବରେହି ପାଣି ଜଳପ୍ରପାତ, ବାଙ୍ଗିରୀପୋଷି ଘାଟି<br>- ମଠା ଓ ଟସର ବସ୍ତ୍ର<br>- ଖିଚିଂର ପଥର ବାସନ | ପ୍ରଧାନ ଫସଲ- ଧାନ, ମୁଗ, ବିରି, ହରଡ଼, କୋଳଥ, ସୋରିଷ, ରାଶି, ସବାଇଘାସ, ସିସଲ୍‌ପଟ<br>ମୁଖ୍ୟ ଜୀବିକା- କୃଷି, ଖଣିକାମ, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ରଜ, ରଥଯାତ୍ରା, ଚଇତି ପର୍ବ, ମକର, ଛଉନୃତ୍ୟ | ୨,୨୨୧,୭୮୨ |
| ସୁନ୍ଦରଗଡ଼<br>★ ସୁନ୍ଦରଗଡ଼ | ସବ୍‌ଡିଭିଜନ୍- ୩ଟି<br>ବ୍ଲକ୍-୧୭ଟି<br>ପ୍ରଧାନସହର- ସୁନ୍ଦରଗଡ଼ | ଅଧିକାଂଶ ଅଞ୍ଚଳ ଉଚ୍ଚଭୂମି ଓ କେତେକ ଅଞ୍ଚଳରେ ଜଙ୍ଗଲ ଦେଖାଯାଏ ।<br>ପ୍ରଧାନ ନଦୀ- ଇବ୍, ଶଙ୍ଖ, କୋଏଲ, ବ୍ରାହ୍ମଣୀ<br>ଖଣିଜ ପଦାର୍ଥ- ଲୁହାପଥର, ଚୂନପଥର, ମାଙ୍ଗାନିଜ୍, ଡୋଲାମାଇଟ୍, ସୀସା | ଖଣ୍ଡାଧାର ଜଳପ୍ରପାତ, ବେଦବ୍ୟାସ, ଜୁନାଗଡ଼, ମନ୍ଦିରା ଜଳ ଯୋଜନା<br>ଇସ୍ପାତ କାରଖାନା- ରାଉରକେଲା ସାର କାରଖାନା<br>ସିମେଣ୍ଟ କାରଖାନା- ରାଜଗାଙ୍ଗପୁର<br>କାରଖାନା- କାଂସ ବହଲ କଳକବ୍ଜା | ପ୍ରଧାନ ଫସଲ- ଧାନ, ଗହମ, ମୁଗ, ବିରି, କୋଳଥ,ହରଡ଼, ଚିନାବାଦାମ, ସୋରିଷ, ଆଖୁ, କପା, ଝୋଟ<br>ମୁଖ୍ୟ ଜୀବିକା- କୃଷି, ଖଣି ଓ କଳକାରଖାନାରେ କାମ କରିବା, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ ।<br>ପର୍ବପର୍ବାଣି- ମହାବିଷୁବ ସଂକ୍ରାନ୍ତି, ଅକ୍ଷୟ ତୃତୀୟା, ରଜ, ଦୀପାବଳୀ, ମକର, ନୂଆଖାଇ, କରମା, ଦଶହରା, ବଡ଼ଦିନ, ଗଙ୍ଗୁନାଚ, ଖରିଆ ନାଚ, ଓରାଙ୍ଗ ନାଚ | ୧,୮୨୯,୪୧୨ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| ଝାରସୁଗୁଡ଼ା<br>★ ଝାରସୁଗୁଡ଼ା | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୫ଟି<br>ପ୍ରଧାନସହର- ଝାରସୁଗୁଡ଼ା | କେତେକ ଅଞ୍ଚଳ ସମତଳ, ଅନ୍ୟ ଅଞ୍ଚଳଗୁଡ଼ିକ ପାହାଡ଼ିଆ ଠାଏ ଠାଏ ଜଙ୍ଗଲ ।<br>ପ୍ରଧାନ ନଦୀ- ମହାନଦୀ, ଇବ୍<br>ଖଣିଜ ପଦାର୍ଥ- କୋଇଲା, କ୍ୱାର୍ଜ, ଅଗ୍ନିନିରୋଧକ ମାଟି | ବିକ୍ରମଖୋଲ ବନ୍ଧୁହରପାଲି ଠାରେ ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ର, ବ୍ରଜରାଜନଗର ଠାରେ କାଗଜ କଳ | ପ୍ରଧାନ ଫସଲ- ଧାନ, ଗହମ, ବାଜରା, ଚିନାବାଦାମ, ଆଖୁ<br>ମୁଖ୍ୟ ଜୀବିକା- କୃଷି, ଖଣିକାମ,<br>ପର୍ବପର୍ବାଣି- କରମା ନୂଆଖାଇ, ମହୁଲଗୁଣ୍ଡି, କୁମାରପୂର୍ଣ୍ଣିମା, ପୌଷପୂର୍ଣ୍ଣିମା<br>- ଦଣ୍ଡନାଚ, କରମାନାଚ, ଡାଲଖାଇ | ୫୦୯,୦୫୬ |
| ବୌଦ<br>★ ବୌଦ | ସବ୍‌ଡିଭିଜନ୍- ୧ଟି<br>ବ୍ଲକ୍-୩ଟି<br>ପ୍ରଧାନସହର- ବୌଦ | କେତେକ ଅଞ୍ଚଳ ସମତଳ, ଅନ୍ୟ ଅଞ୍ଚଳ ଉଚ୍ଚଭୂମି, ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ ।<br>ପ୍ରଧାନ ନଦୀ- ମହାନଦୀ, ବାଘ, ସାଲୁଙ୍କୀ<br>ଖଣିଜ ପଦାର୍ଥ- ରତ୍ନପଥର, ଅଗ୍ନିନିରୋଧକ ମାଟି, କ୍ୱାର୍ଜ, ଅଭ୍ର | ବୌଦର ବୌଦ୍ଧକୀର୍ତ୍ତି, ଚାରିଶମ୍ଭୁ, ମହାନଦୀର ସାତକୋଶିଆ ଗଣ୍ଡ (କୁମ୍ଭୀର ଚାଷ) | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, କାନ୍ଦୁଲ<br>ମୁଖ୍ୟ ଜୀବିକା- କୃଷି, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ<br>ପର୍ବପର୍ବାଣି- ରଥଯାତ୍ରା, ନୂଆଖାଇ, ଶିବରାତ୍ରି | ୩୭୩,୦୩୮ |
| କନ୍ଧମାଳ<br>★ ଫୁଲବାଣୀ | ସବ୍‌ଡିଭିଜନ୍- ୨ଟି<br>ବ୍ଲକ୍-୧୨ଟି<br>ପ୍ରଧାନସହର- ଫୁଲ୍‌ବାଣୀ | ଭୂମି ଉଚ୍ଚ ଓ ପାହାଡ଼ିଆ ଏବଂ ପାହାଡ଼ିଆ ଅଞ୍ଚଳ ଜଙ୍ଗଲ ପୂର୍ଣ୍ଣ ।<br>ପ୍ରଧାନ ନଦୀ- ବାଘ, ରାହୁଲ, ଖଡ଼୍‌ଗ<br>ଖଣିଜ ପଦାର୍ଥ- ଗ୍ରାଫାଇଟ୍ | କଳିଙ୍ଗା ଘାଟୀ, ପୁଟୁଡ଼ି, ଚକାପଦା, ଦାରିଙ୍ଗିବାଡ଼ି<br>କୁଟୀରଶିଳ୍ପ- ଖଲିପତ୍ର, ଫୁଲ୍‌ଝାଡୁ, ସପମସିଣା ତିଆରି କରିବା | ପ୍ରଧାନ ଫସଲ- ଧାନ, ମାଣ୍ଡିଆ, କାନ୍ଦୁଲ, ମକା, ରାଶି, ହଳଦୀ, ପାଳୁଅ<br>ଜୀବିକା-କୃଷି ଓ ଜଙ୍ଗଲଜାତଦ୍ରବ୍ୟସଂଗ୍ରହ<br>ପର୍ବପର୍ବାଣି- ମାଟିପୂଜା, ପର୍ବତପୂଜା, ଠାକୁରାଣୀ ଯାତ୍ରା, କେଡୁଯାତ୍ରା<br>ଧାଙ୍ଗଡ଼ାଧାଙ୍ଗଡ଼ୀ ନାଚ, ଡାଲ୍‌ଖାଇ ନାଚ | ୬୪୭,୯୧୨ |



Digitized by PPRACHIN, SOA

| ଜିଲାର ନାମ ଓ ସଦର ମହକୁମା | ଗଠନ ଓ ପ୍ରଧାନ ସହର | ଭୂମିରୂପ | ପ୍ରସିଦ୍ଧ ସ୍ଥାନ/ ଶିଳ୍ପ | ଲୋକଙ୍କ ଚାଲିଚଳନ | ଲୋକସଂଖ୍ୟା |
|---|---|---|---|---|---|
| କେନ୍ଦୁଝର<br>★ କେନ୍ଦୁଝର | ସବ୍‌ଡିଭିଜନ୍- ୩ଟି<br>ବ୍ଲକ୍-୧୩ଟି<br>ପ୍ରଧାନସହର- କେନ୍ଦୁଝର | ଦକ୍ଷିଣଭାଗ ଅଞ୍ଚଳ ଏବଂ ଅନ୍ୟ ଅଞ୍ଚଳଗୁଡ଼ିକ ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ ।<br>ପ୍ରଧାନ ନଦୀ- ବୈତରଣୀ, ଶାଳନ୍ଦୀ<br>ଖଣିଜ ପଦାର୍ଥ- ଲୁହାପଥର, ମାଙ୍ଗାନିଜ୍, କ୍ରୋମାଇଟ୍ | ସାନ ଘାଘରା, ବଡ଼ ଘାଘରା ଓ ମୁର୍ଗା ଜଳପ୍ରପାତ, ଘଟଗାଁ ତାରିଣୀ ମନ୍ଦିର, ଦେଓଝର ମୁର୍ଗା ମହାଦେବ ମନ୍ଦିର, ସୀତାବାଞ୍ଜି, ହଦଗଡ଼<br>ବଡ଼ବିଲ୍- କଳିଙ୍ଗ ଲୁହା କାରଖାନା<br>ପଳାଶପଙ୍ଗା- ସ୍ୱଞ୍ଜ୍ ଲୁହା କାରଖାନା<br>ଯୋଡ଼ା- ଫେରୋ ମାଙ୍ଗାନିଜ୍ କାରଖାନା | ପ୍ରଧାନ ଫସଲ- ଧାନ, ମକା, ବାଜରା, ମାଣ୍ଡିଆ, ମୁଗ, ବିରି, ହରଡ଼, ଝୋଟ, ସିସଲପଟ, ଚାହା<br>ମୁଖ୍ୟ ଜୀବିକା- କୃଷି, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ, ଖଣିରେ କାମ କରିବା<br>ପର୍ବପର୍ବାଣି- ବାରୁଣୀ ଯାତ୍ରା, ଠାକୁରାଣୀ ଯାତ୍ରା, ଚନ୍ଦନ ଯାତ୍ରା, ରଥଯାତ୍ରା, ଦଶହରା, ଦୋଳ, ହିଙ୍ଗୁଳା ପର୍ବ,ଚାଙ୍ଗୁନାଚ, ଜୁଆଙ୍ଗନାଚ | ୧,୫୬୧,୫୧୨ |

ତାରା (★) ଚିହ୍ନିତ ସହର ସଂପୃକ୍ତ ଜିଲାର ସଦର ମହକୁମା

**ବାର୍ଷିକ ପରୀକ୍ଷା**



Digitized by PPRACHIN, SOA

| ପରିବେଶ ଶିକ୍ଷାରେ (ସାମାଜିକ ପାଠ) ନ୍ୟୂନତମ ଶିକ୍ଷଣସ୍ତର (ତୃତୀୟ ଶ୍ରେଣୀ) | | | |
|---|---|---|---|
| କ୍ର. ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
| ୧. | ସାମାଜିକ ଓ ପ୍ରାକୃତିକ ପରିବେଶରେ ନିଜକୁ ଖାପ ଖୁଆଇ ଚଳିବା ପାଇଁ ସଚେତନ ହେବେ । | ୧.ෆ | **ନିରାପତ୍ତା ନିୟମ ଓ ଶୃଙ୍ଖଳିତ ବ୍ୟବହାର ।** |
| | | ୧.෩.୧ | ଘରେ, ବିଦ୍ୟାଳୟରେ ଓ ସର୍ବସାଧାରଣ ସ୍ଥାନରେ ଶୃଙ୍ଖଳିତ ବ୍ୟବହାର ପ୍ରଦର୍ଶନ କରିବାକୁ ପସ[illegible] କରିବେ । |
| | | ୧.෩.୨ | ଧାଡ଼ିରେ ଛିଡ଼ା ହୋଇ ନିଜ ପାଳି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବେ । |
| | | ୧.෩.෩ | ରାସ୍ତାର ମୁଖ୍ୟ ସଙ୍କେତଗୁଡ଼ିକୁ ବୁଝିବେ । |
| | | ୧.෩.୪ | ରାସ୍ତାରେ ମୁଖ୍ୟ ନିୟମଗୁଡ଼ିକୁ ପାଳନ କରିବେ । |
| ୨. | ନାଗରିକ ଭାବରେ ନିଜର ସାମାଜିକ ପରିବେଶରେ ଗୁରୁତ୍ୱପୂର୍ଣ୍ଣ ଦିନଗୁଡ଼ିକୁ ଚିହ୍ନିବେ ଓ ସେଗୁଡ଼ିକର କାର୍ଯ୍ୟକାରିତା ବୁଝିବେ । | ୨.෩ | **ନାଗରିକ ଜୀବନକୁ ସରସ ସୁନ୍ଦର କରୁଥିବା ସୁବିଧା ସୁଯୋଗ ।** |
| | | ୨.෩.୧ | ଡାକ୍ତରଖାନା, ଥାନା, ଡାକଘର, ପଞ୍ଚାୟତ, ନଗରପାଳିକା, ଅଦାଲତ ଓ ବ୍ୟାଙ୍କ ପରି ଅନୁଷ୍ଠାନ[illegible] କାର୍ଯ୍ୟ ସଂପର୍କରେ ପଚାରି ବୁଝିବେ । |
| | | ୨.෩.୨ | ଗ୍ରାମପଞ୍ଚାୟତ, ବ୍ଲକ୍, ତହସିଲ୍, ସବ୍‌ଡିଭିଜନ୍ ଓ ଜିଲ୍ଲାସ୍ତରୀୟ କେତେକ କର୍ମକର୍ତ୍ତାଙ୍କର ଭୂମିକ[illegible] ସମ୍ପର୍କରେ ଜାଣିବେ । |
| ෩. | ବିଭିନ୍ନ କାର୍ଯ୍ୟ କରୁଥିବା ଲୋକମାନଙ୍କୁ ଜାଣିବେ ଏବଂ ସେମାନଙ୍କ କାର୍ଯ୍ୟର ଗୁରୁତ୍ୱ ଉପଲବ୍ଧି କରିବେ । | ෩.෩ | **ଆମ ଜୀବନ ଓ ଜୀବିକା ।** |
| | | ෩.෩.୧ | ଦୈନନ୍ଦିନ ଜୀବନରେ ଆବଶ୍ୟକ ହେଉଥିବା ଦ୍ରବ୍ୟଗୁଡ଼ିକ ଉତ୍ପାଦନ ସହ ସଂପୃକ୍ତ ବୃତ୍ତିର ତାଲିକ[illegible] ପ୍ରସ୍ତୁତ କରିବେ । |
| | | ෩.෩.୨ | କୃଷକ, ଗୋପାଳକ, ମତ୍ସ୍ୟଜୀବୀ, ପଶୁପାଳକ ଭଳି ଖାଦ୍ୟ ଉତ୍ପାଦନକାରୀମାନଙ୍କୁ ଚିହ୍ନ[illegible] କରିବେ । |
| | | ෩.෩.෩ | ଉପରୋକ୍ତ ଉତ୍ପାଦନକାରୀଙ୍କ ମୁଖ୍ୟ କାର୍ଯ୍ୟ ଓ ଜୀବନଯାପନ ପ୍ରଣାଳୀ ବର୍ଣ୍ଣନା କରିବେ । |
| ୪. | ମନୁଷ୍ୟ ଏବଂ ତାହାର ପରିବେଶ ମଧ୍ୟରେ ଥିବା ମୁଖ୍ୟ ସ୍ଥାନୀୟ ଭୂମିରୂପ ବିଷୟରେ ବୁଝିପାରିବେ ଓ ତର୍ଜମା କରିବେ । | ୪.෩ | **ଆମ ଜିଲ୍ଲା ।** |
| | | ୪.෩.୧ | ଶ୍ରେଣୀ କୋଠରିର ନକ୍ସା ବା ଚିତ୍ର ଆଙ୍କି ବିଦ୍ୟାଳୟ ଏବଂ ସ୍ଥାନୀୟ ଅଞ୍ଚଳ ଅଥବା ଏହାର କେତେ[illegible] ଅଂଶ ନେଇ ହାତଟଣା ମାନଚିତ୍ର ଅଙ୍କନ କରିବେ । |
| | | ୪.෩.୨ | ମାନଚିତ୍ର କିମ୍ୱା ହାତ ଅଙ୍କା ମାନଚିତ୍ରରେ ଦିଗ ନିର୍ଣ୍ଣୟ କରିପାରିବେ । |



Digitized by PPRACHIN, SOA

| କ୍ର.ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
|---|---|---|---|
| | | ୪.୩.୩ | ରାଜ୍ୟ ଭିତରେ ଜିଲା ଓ ଦେଶ ଭିତରେ ରାଜ୍ୟକୁ ମାନଚିତ୍ରରେ ଚିହ୍ନଟ କରିପାରିବେ । |
| | | ୪.୩.୪ | ଜିଲାର ମୁଖ୍ୟ ପ୍ରାକୃତିକ ଭୂମିରୂପ, ଜଳବାୟୁ, ପ୍ରାକୃତିକ ଉଦ୍ଭିଦ, କୃଷି ଏବଂ ଶିଳ୍ପ ବିଷୟରେ ଜାଣିବେ । |
| | | ୪.୩.୫ | ଜିଲାର ମାନଚିତ୍ର ଅଙ୍କନ କରିପାରିବେ ଓ ତହିଁରେ ପ୍ରାକୃତିକ ଭୂଭାଗ, ପ୍ରସିଦ୍ଧ ସ୍ଥାନ, ରାସ୍ତା ଦେଖାଇ ପାରିବେ । |
| | | ୪.୩.୬ | ଜିଲାର ଲୋକମାନଙ୍କ ଜୀବନଧାରା ବର୍ଣ୍ଣନା କରିପାରିବେ । (କେତୋଟି ବଛା ବଛା ଦିଗ) । |
| ୫. | ମଣିଷର ଅତୀତ ଓ ବର୍ତ୍ତମାନ ମଧ୍ୟରେ ଥିବା ସଂପର୍କକୁ ଲକ୍ଷ୍ୟ କରିବେ ଏବଂ ଅତୀତକୁ ଉପଯୁକ୍ତ ପରିପ୍ରେକ୍ଷୀରେ ବୁଝିବେ । | ୫.୩ | **ଆମ ପୂର୍ବପୁରୁଷ ।** |
| | | ୫.୩.୧ | ପୁରାତନ ଯୁଗର ମଣିଷର ଜୀବନଧାରା ସଂପର୍କରେ ବର୍ଣ୍ଣନା କରିବେ । |
| | | ୫.୩.୨ | ପୁରାତନ ଯୁଗର ମଣିଷ ଜୀବନ ବର୍ତ୍ତମାନର ମଣିଷ ଜୀବନଠାରୁ କାହିଁକି ସଂପୂର୍ଣ୍ଣ ଅଲଗା ଥିଲା ତାହା ବୁଝିବେ । |
| | | ୫.୩.୩ | ତା'ର ଜୀବନଯାପନ ପ୍ରଣାଳୀ ଓ ଯେଉଁ ପରିସ୍ଥିତିରେ ସେ ବାସ କରୁଥିଲା ତାହା ବୁଝିବେ । |
| | | ୫.୩.୪ | ୫୦୦୦ ବର୍ଷ ପୂର୍ବେ ଭାରତର କେତେକ ବିଶେଷ ସ୍ଥାନରେ ବାସ କରୁଥିବା ଲୋକଙ୍କ ଜୀବନ ସଂପର୍କରେ କେତେକ ସରଳ ତଥ୍ୟ ଜାଣିବେ । |
| ୬. | ସାଧାରଣ କିନ୍ତୁ ସରଳ ଓ ସହଜରେ ଜାଣିପାରୁଥିବା ସାମାଜିକ ଏବଂ ଆର୍ଥିକ ପରିସ୍ଥିତି ଓ ସମସ୍ୟାକୁ ଅନୁଧ୍ୟାନ କରି ସେଗୁଡ଼ିକୁ ବିଶ୍ଳେଷଣ କରିବେ ଏବଂ ନିଜ ଅନୁଭୂତି ସ୍ତରରେ ସମ୍ଭାବ୍ୟ ସମାଧାନ ପନ୍ଥା ଖୋଜିବେ । | ୬.୩ | **ଛୋଟ ପରିବାର, ସୁଖୀ ପରିବାର ।** |
| | | ୬.୩.୧ | ଛୋଟ ଘରେ ବଡ଼ ପରିବାର ରହିବା ଫଳରେ ହେଉଥିବା ଅସୁବିଧାଗୁଡ଼ିକୁ ଲକ୍ଷ୍ୟ କରିବେ । |
| | | ୬.୩.୨ | ଡାକ୍ତରଖାନା, ରେଳଗାଡ଼ି, ବସ୍ ଇତ୍ୟାଦିରେ ହେଉଥିବା ଅତ୍ୟଧିକ ଭିଡ଼କୁ ଲକ୍ଷ୍ୟକରିବେ । |
| | | ୬.୩.୩ | ସ୍ଥାନୀୟ ଗୁରୁଜନମାନଙ୍କ ସହ ଆଲୋଚନା କରି ବର୍ତ୍ତମାନର ଜନଗହଳି ଅବସ୍ଥାକୁ ପୂର୍ବ କାଳର ଅବସ୍ଥା ସହ ତୁଳନା କରିବେ । |



Digitized by PPRACHIN, SOA

| ପରିବେଶ ଶିକ୍ଷାରେ (ବିଜ୍ଞାନ) ନ୍ୟୂନତମ ଶିକ୍ଷଣସ୍ତର (ତୃତୀୟ ଶ୍ରେଣୀ) | | | |
|---|---|---|---|
| କ୍ର.ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
| ୭. | ଉତ୍ତମ ସ୍ୱାସ୍ଥ୍ୟ ପାଇଁ କ'ଣ କ'ଣ ଦରକାର ବୁଝିବେ । | ୭.୩ | **ଉତ୍ତମ ସ୍ୱାସ୍ଥ୍ୟ** |
| | | ୭.୩.୧ | ଆଖି, ବାଳ ଓ ଦାନ୍ତ ପରି ମଣିଷ ଦେହର ବିଭିନ୍ନ ଅଙ୍ଗର କାର୍ଯ୍ୟ ଓ ଯତ୍ନ ବିଷୟରେ ଜାଣିବେ |
| ୮. | ନିଜ ପରିବେଶର ସଜୀବ ବସ୍ତୁଗୁଡ଼ିକ ବିଷୟରେ ବିଭିନ୍ନ ତଥ୍ୟ ସଂଗ୍ରହ କରି ସେଗୁଡ଼ିକୁ ବର୍ଗୀକରଣ କରି ସିଦ୍ଧାନ୍ତରେ ଉପନୀତ ହେବେ । | ୮.୩ | **ସଜୀବ ବସ୍ତୁମାନଙ୍କର ଲକ୍ଷଣ ଓ ବର୍ଗୀକରଣ ।** |
| | | ୮.୩.୧ | ସ୍ଥାନୀୟ ପରିବେଶକୁ ଅନୁଧ୍ୟାନ କରି ସେଗୁଡ଼ିକୁ (କ) ସଜୀବ ଓ ନିର୍ଜୀବ (ଖ) ପ୍ରାକୃତିକ ମନୁଷ୍ୟକୃତ ବସ୍ତୁଭାବେ ଶ୍ରେଣୀ ବିଭାଗ କରିବେ । |
| | | ୮.୩.୨ | ପ୍ରାଣୀ ଓ ଉଦ୍ଭିଦ ମଧ୍ୟରେ ସାମଞ୍ଜସ୍ୟ ଓ ପାର୍ଥକ୍ୟ ବୁଝିବେ । |
| | | ୮.୩.୩ | ଉଦ୍ଭିଦର ମୁଖ୍ୟ ଅଂଶଗୁଡ଼ିକୁ ଚିହ୍ନିବେ । |
| | | ୮.୩.୪ | ଆକାର, ଜୀବନକାଳ ଓ ଋତୁ ଅନୁସାରେ ଉଦ୍ଭିଦର ଶ୍ରେଣୀବିଭାଗ କରିବେ । |
| | | ୮.୩.୫ | ବିଭିନ୍ନ ପଶୁ ଓ ପକ୍ଷୀଙ୍କର ଖାଦ୍ୟ ଅଭ୍ୟାସ ଲକ୍ଷ୍ୟ କରିବେ । |
| ୯. | ନିର୍ଜୀବ ବସ୍ତୁଗୁଡ଼ିକର କେତେକ ଲକ୍ଷଣକୁ ଲକ୍ଷ୍ୟ କରିବେ ଏବଂ ସେଗୁଡ଼ିକୁ ପରୀକ୍ଷା କରିବେ । | ୯.୩ | **ବସ୍ତୁର ଧର୍ମ ବା ଲକ୍ଷଣ ।** |
| | | ୯.୩.୧ | ରଙ୍ଗ, ରଚନା (Texture), କଠିନତା ଓ କୋମଳତା ଭଳି ସହଜରେ ଦେଖି ହେଉଥିବା ବସ୍ତୁ କେତେକ ଧର୍ମକୁ ଭିତ୍ତିକରି ବସ୍ତୁକୁ ଚିହ୍ନିବେ । |
| | | ୯.୩.୨ | ଏହି ଧର୍ମଗୁଡ଼ିକ ଅନୁସାରେ ବସ୍ତୁଗୁଡ଼ିକର ଶ୍ରେଣୀବିଭାଗ କରିବେ । |
| ୧୦. | ପୃଥିବୀ ଓ ଆକାଶରେ ଘଟୁଥିବା ସାଧାରଣ ଘଟଣାବଳୀକୁ ଦେଖିବେ ଓ ସିଦ୍ଧାନ୍ତ ଗ୍ରହଣ କରିବେ । | ୧୦.୩ | **ପୃଥିବୀ ଓ ସୂର୍ଯ୍ୟ** |
| | | ୧୦.୩.୧ | ପୃଥିବୀ ଓ ସୂର୍ଯ୍ୟ ମଧ୍ୟରେ ସଂପର୍କ ଏବଂ ଏହାର ଫଳାଫଳ ଜାଣିବେ । |
| | | ୧୦.୩.୨ | ପୃଥିବୀର ଆକାର ବର୍ଣ୍ଣନା କରିବେ । |
| | | ୧୦.୩.୩ | ଜଳର ବିଭିନ୍ନ ବ୍ୟବହାର ବର୍ଣ୍ଣନା କରିବେ । |
| | | ୧୦.୩.୪ | ଜଳର ବିଭିନ୍ନ ଉତ୍ସ ସମ୍ବନ୍ଧରେ ଜାଣିବେ । |
| | | ୧୦.୩.୫ | ଜଳର ବିଭିନ୍ନ ସ୍ଥାନୀୟ ଉତ୍ସ ଚିହ୍ନଟ କରିବେ । |
| | | ୧୦.୩.୬ | ଜଳ କିପରି ଦୂଷିତ ହୁଏ ତାହା ଜାଣିବେ । |



Digitized by PPRACHIN, SOA

| ପରିବେଶ ଅଧ୍ୟୟନ ଓ ବିଜ୍ଞାନ (ତୃତୀୟ ଶ୍ରେଣୀ) | | | |
|---|---|---|---|
| କ୍ର.ନଂ | ପ୍ରସଙ୍ଗ | ଦକ୍ଷତା | ପିରିୟଡ୍ |
| ୧. | ଘରେ ବାହାରେ | ◆ ଘରେ, ବିଦ୍ୟାଳୟରେ ଓ ସର୍ବସାଧାରଣ ସ୍ଥାନରେ ଶୃଙ୍ଖଳିତ ବ୍ୟବହାର ପ୍ରଦର୍ଶନ କରିବାକୁ ପସନ୍ଦ କରିବେ ।<br>◆ ଧାଡ଼ିରେ ଛିଡ଼ା ହୋଇ ନିଜ ପାଳି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବେ ।<br>◆ ରାସ୍ତାର ମୁଖ୍ୟ ସଙ୍କେତଗୁଡ଼ିକ ବୁଝିବେ ।<br>◆ ରାସ୍ତାର ମୁଖ୍ୟ ନିୟମଗୁଡ଼ିକୁ ପାଳନ କରିବେ । | ୧୦ |
| ୨. | କେଉଁଠି କ'ଣ ହୁଏ | ◆ ଡାକ୍ତରଖାନା ସଂପର୍କରେ ଜାଣିବେ ଓ ପଚାରି ବୁଝିବେ । | ୮ |
| ୩. | ଶୃଙ୍ଖଳା ପ୍ରହରୀ | ◆ ଥାନା ସଂପର୍କରେ ଜାଣିବେ ଓ ପଚାରି ବୁଝିବେ । | ୮ |
| ୪. | ଡାକଘର | ◆ ଡାକଘର ସଂପର୍କରେ ଜାଣିବେ ଓ ଏହାର କାର୍ଯ୍ୟ ପଚାରି ବୁଝିବେ । | ୬ |
| ୫. | ଆମରି ଶାସନ ଆମରି ହାତେ | ◆ ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି, ଜିଲା ପରିଷଦ, ପୌର ପରିଷଦ ସଂପର୍କରେ ଜାଣିବେ ଓ କେତେକ କର୍ମଚାରୀଙ୍କର କାର୍ଯ୍ୟ ଓ ଭୂମିକା ଗଠନ ତଥା ନିର୍ବାଚନ ସଂପର୍କରେ ଅବଗତ ହେବେ । | ୨୬ |
| ୬. | ଅଜାଙ୍କ ବିଚାର ବଦଳିଲା | ◆ ବ୍ୟାଙ୍କ୍, ଅଦାଲତ, ଜିଲ୍ଲାପାଳ ଓ ଉପ ଜିଲ୍ଲାପାଳଙ୍କ କାର୍ଯ୍ୟ ସଂପର୍କରେ ଜାଣିବେ ଓ କେତେକ କର୍ମକର୍ତ୍ତାଙ୍କୁ ଚିହ୍ନିବେ । | ୧୦ |
| ୭. | ଆମ ଚାରିପଟେ ଥିବା ଜିନିଷ | ◆ ଦୈନନ୍ଦିନ ଜୀବନରେ ଆବଶ୍ୟକ ହେଉଥିବା ଦ୍ରବ୍ୟଗୁଡ଼ିକ ପରିଚିତ ହେବେ ଓ ସେ ସଂପର୍କରେ ଜାଣିବେ ।<br>◆ ସ୍ଥାନୀୟ ପରିବେଶକୁ ଅନୁଧ୍ୟାନ କରି ସେଗୁଡ଼ିକର ସଜୀବ ଓ ନିର୍ଜୀବ ବସ୍ତୁ ଭାବେ ଶ୍ରେଣୀ ବିଭାଗ କରିବେ । | ୧୨ |
| ୮. | ବୃତ୍ତିଏ ମୋ ପୋଷେ କୁଟୁମ୍ବ | ◆ କୃଷକ, ଗୋପାଳନ, ମତ୍ସ୍ୟଜୀବୀ ଓ ପଶୁ ପାଳକ ଭଳି ଖାଦ୍ୟ ଉତ୍ପାଦନକାରୀଙ୍କୁ ଚିହ୍ନଟ କରିବେ ଓ ସଂପୃକ୍ତ ବୃତ୍ତିର ତାଲିକା କରିବେ ।<br>◆ ଉପରୋକ୍ତ ଉତ୍ପାଦନକାରୀଙ୍କ ମୁଖ୍ୟକାର୍ଯ୍ୟ ଓ ଜୀବନଯାପନ ପ୍ରଣାଳୀ ବର୍ଣ୍ଣନା କରିବେ । | ୧୪ |



Digitized by PPRACHIN, SOA

| କ୍ର.ନଂ | ପ୍ରସଙ୍ଗ | ଦକ୍ଷତା | ପିରିୟଡ୍ |
|---|---|---|---|
| ୯. | ଜୀବ ନିର୍ଜୀବ | ◆ ସ୍ଥାନୀୟ ପରିବେଶକୁ ଅନୁଧ୍ୟାନ କରି ସେଗୁଡ଼ିକୁ ସଜୀବ ଓ ନିର୍ଜୀବ ପ୍ରାକୃତିକ ଓ ମନୁଷ୍ୟକୃତ ବସ୍ତୁଭାବେ ଶ୍ରେଣୀ ବିଭାଗ କରିବେ । | ୧୨ |
| ୧୦. | ଉଦ୍ଭିଦର ବିଭିନ୍ନ ଅଂଶ | ◆ ଉଦ୍ଭିଦର ମୁଖ୍ୟ ଅଂଶ ବୃଦ୍ଧିକୁ ଚିହ୍ନିବେ ।<br>◆ ପ୍ରାଣୀ ଓ ଉଦ୍ଭିଦ ମଧ୍ୟରେ ସାମଞ୍ଜସ୍ୟ ଓ ପାର୍ଥକ୍ୟ ବୁଝିବେ ଓ ଋତୁ ଅନୁସାରେ ଉଦ୍ଭିଦର ଶ୍ରେଣୀବିଭାଗ କରିବେ । | ୧୨ |
| ୧୧. | ପ୍ରାଣୀର ଶରୀର ଗଠନ ଓ ଖାଦ୍ୟାଭ୍ୟାସ | ◆ ବିଭିନ୍ନ ପଶୁ ଓ ପକ୍ଷୀଙ୍କର ଖାଦ୍ୟ ଅଭ୍ୟାସ ଲକ୍ଷ୍ୟ କରିବେ ଓ ଆଭ୍ୟନ୍ତରୀଣ ଅଙ୍ଗ ସମ୍ବନ୍ଧରେ ଜାଣିବେ । | ୧୫ |
| ୧୨. | ପଡି ଯାଇଥିଲା ସର୍କସ ଦେଖି | ◆ ମନୁଷ୍ୟର ବାହ୍ୟଅଙ୍ଗ ସଂପର୍କରେ ଜାଣିବେ ଓ ଏହାର ଯତ୍ନ ନେବେ । | ୧୩. |
| ୧୩. | ବସ୍ତୁର ଗୁଣ ଓ ଧର୍ମ | ◆ ବସ୍ତୁର ଧର୍ମ ବା ଲକ୍ଷଣ ସମ୍ବନ୍ଧରେ ଜାଣିବେ ।<br>◆ ରଙ୍ଗ, ରଚନା (Texture) କଠିନତା ଓ କୋମଳତା ଭଳି ସହଜରେ ଦେଖି ହେଉଥିବା ବସ୍ତୁର କେତେକ ଧର୍ମକୁ ଭିତ୍ତିକରି ବସ୍ତୁକୁ ଚିହ୍ନିବେ ।<br>◆ ଏହି ଧର୍ମଗୁଡ଼ିକ ଅନୁସାରେ ବସ୍ତୁଗୁଡ଼ିକର ଶ୍ରେଣୀ ବିଭାଗ କରିବେ । | ୧୯ |
| ୧୪. | ହାତୀ ଖୋଳିଲା ପାଣି | ◆ ଜଳର ବିଭିନ୍ନ ବ୍ୟବହାର ବର୍ଣ୍ଣନା କରିବେ ।<br>◆ ଜଳର ବିଭିନ୍ନ ଉତ୍ସ ସମ୍ବନ୍ଧରେ ଜାଣିବେ ।<br>◆ ଜଳର ବିଭିନ୍ନ ସ୍ଥାନୀୟ ଉତ୍ସ ଚିହ୍ନଟ କରିବେ ।<br>◆ ଜଳ କିପରି ଦୂଷିତ ହୁଏ ତାହା ଜାଣିବେ । | ୨୧ |
| ୧୫. | ପୃଥିବୀ ଓ ସୂର୍ଯ୍ୟ | ◆ ପୃଥିବୀ ଓ ସୂର୍ଯ୍ୟ ମଧ୍ୟରେ ସଂପର୍କ ଏବଂ ଏହାର ଫଳାଫଳ ଜାଣିବେ ।<br>◆ ପୃଥିବୀର ଆକାର ବର୍ଣ୍ଣନା କରିବେ । | ୧୦ |
| ୧୬. | ପୁରାତନରୁ ନୂତନ | ◆ ପୁରାତନ ଯୁଗର ମଣିଷର ଜୀବନଧାରା ସଂପର୍କରେ ଜାଣିବେ ।<br>◆ ପୁରାତନ ଯୁଗର ମଣିଷ ଜୀବନ ଓ ବର୍ତ୍ତମାନର ମଣିଷ ଜୀବନଠାରୁ କାହିଁକି ସଂପୂର୍ଣ୍ଣ ଅଲଗା ଥିଲା ତାହା ବୁଝିବେ । | ୫ |



Digitized by PPRACHIN, SOA

| କ୍ର.ନଂ | ପ୍ରସଙ୍ଗ | ଦକ୍ଷତା | ପିରିୟଡ୍ |
|---|---|---|---|
| | | ◆ ତା'ର ଜୀବନଯାପନ ପ୍ରଣାଳୀ ଓ କେଉଁ ପରିସ୍ଥିତିରେ ସେ ବାସକରୁଥିଲା ତାହା ବୁଝିବେ ।<br>◆ ୫୦୦ ବର୍ଷ ପୂର୍ବେ ଭାରତର କେତେକ ବିଶେଷ ସ୍ଥାନରେ ବାସ କରୁଥିବା ଲୋକଙ୍କ ଜୀବନ ସଂପର୍କରେ କେତେକ ସରଳ ତଥ୍ୟ ଜାଣିବେ । | |
| ୧୭. | ଶିକାର ଖୋଜା | ◆ ଛୋଟ ଘରେ ବଡ଼ ପରିବାର ରହିବା ଫଳରେ ହେଉଥିବା ଅସୁବିଧାଗୁଡ଼ିକୁ ଲକ୍ଷ୍ୟ କରିବେ ।<br>◆ ଡାକ୍ତରଖାନା, ରେଳଗାଡ଼ି, ବସ୍ ଇତ୍ୟାଦିରେ ହେଉଥିବା ଅତ୍ୟଧିକ ଭିଡ଼କୁ ଲକ୍ଷ୍ୟ କରିବେ ।<br>◆ ସ୍ଥାନୀୟ ଗୁରୁଜନମାନଙ୍କ ସହ ଆଲୋଚନା କରି ବର୍ତ୍ତମାନର ଜନ ଗହଳି ଅବସ୍ଥାକୁ ପୂର୍ବକାଳର ଅବସ୍ଥା ସହ ତୁଳନା କରିବେ । | ୫ |
| ୧୮. | ମାନଚିତ୍ର ଅଧ୍ୟୟନ | ◆ ଶ୍ରେଣୀ କୋଠରିର ନକ୍ସା ବା ଚିତ୍ର ଆଙ୍କି ବିଦ୍ୟାଳୟ ଏବଂ ସ୍ଥାନୀୟ ଅଞ୍ଚଳ ଅଥବା ଏହାର କେତେକ ଅଂଶ ନେଇ ହାତଟଣା ମାନଚିତ୍ର ଅଙ୍କନ କରିବେ ।<br>◆ ମାନଚିତ୍ର କିମ୍ବା ହାତ ଅଙ୍କା ମାନଚିତ୍ରରେ ଦିଗ ନିର୍ଣ୍ଣୟ କରିବେ ।<br>◆ ରାଜ୍ୟ ଭିତରେ ଜିଲା ଓ ଦେଶ ଭିତରେ ରାଜ୍ୟକୁ ମାନଚିତ୍ରରେ ଚିହ୍ନଟ କରିବେ । | ୪ |
| ୧୯. | ଆମ ଜିଲା | ◆ ରାଜ୍ୟ ଭିତରେ ଜିଲାକୁ ମାନଚିତ୍ରରେ ଚିହ୍ନଟ କରିବେ ।<br>◆ ଜିଲାର ମୁଖ୍ୟସ୍ଥାନ, ସଦର ମହକୁମା, ଭୂମିରୂପ, ପ୍ରସିଦ୍ଧ ସ୍ଥାନ, ଲୋକଙ୍କ ଚାଲିଚଳନ, ଲୋକସଂଖ୍ୟା, କୃଷି, ପ୍ରାକୃତିକ ଉଦ୍ଭିଦ, ଶିଳ୍ପ ବିଷୟରେ ଜାଣିବେ । | ୬ |



Digitized by PPRACHIN, SOA

# ତୃତୀୟ ଶ୍ରେଣୀ (ଜଣା ଅଜଣା)

## (ବିଜ୍ଞାନ ଓ ସାମାଜିକ ପାଠ)

| ମାସ | ସପ୍ତାହ | ପ୍ରସଙ୍ଗ | ପିରିୟଡ୍ |
|---|---|---|---|
| ଜୁନ୍ | ୪ | ପୂର୍ବ ପାଠର ଆଲୋଚନା (୪)<br>ପ୍ରକଳ୍ପ କାର୍ଯ୍ୟ (୧) | ୫ |
| ଜୁଲାଇ | ୧ | ଘରେ ବାହାରେ (୭) | ୭ |
| | ୨ | ଘରେ ବାହାରେ (୫)<br>କେଉଁଠି କ'ଣ ହୁଏ (୩) | ୮ |
| | ୩ | କେଉଁଠି କ'ଣ ହୁଏ (୫)<br>ଶୃଙ୍ଖଳା ପ୍ରହରୀ (୩) | ୮ |
| | ୪ | ଶୃଙ୍ଖଳା ପ୍ରହରୀ (୫)<br>ପ୍ରଥମ ଏକକ ପରୀକ୍ଷଣ | ୫ |
| ଅଗଷ୍ଟ | ୧ | ଡାକଘର (୬) | ୬ |
| | ୨ | ଡାକଘର (୨)<br>ଆମରି ଶାସନ ଆମରି ହାତେ (୫) | ୭ |
| | ୩ | ଆମରି ଶାସନ ଆମରି ହାତେ (୫) | ୫ |
| | ୪ | ଆମରି ଶାସନ ଆମରି ହାତେ (୪)<br>ଦ୍ୱିତୀୟ ଏକକ ପରୀକ୍ଷଣ | ୪ |
| ସେପ୍ଟେମ୍ବର | ୧ | ଆମରି ଶାସନ ଆମରି ହାତେ (୬) | ୬ |
| | ୨ | ଅଜାଙ୍କ ବିଚାର ବଦଳିଲା (୬) | ୬ |
| | ୩ | ଅଜାଙ୍କ ବିଚାର ବଦଳିଲା (୪)<br>ଆମ ଚାରିପଟେ ଥିବା ଜିନିଷ (୩) | ୭ |
| | ୪ | ଆମ ଚାରିପଟେ ଥିବା ଜିନିଷ (୬) | ୬ |



Digitized by PPRACHIN, SOA

| ମାସ | ସପ୍ତାହ | ପ୍ରସଙ୍ଗ | ପିରିୟଡ୍ |
|---|---|---|---|
| ଅକ୍ଟୋବର | ୧ | ଆମ ଚାରିପଟେ ଥିବା ଜିନିଷ (୩)<br>ତୃତୀୟ ଏକକ ପରୀକ୍ଷଣ | ୩ |
| | ୨ | ବୃତ୍ତି ଏ ମୋ ପୋଷେ କୁଟୁମ୍ବ (୭) | ୭ |
| | ୩ | ବୃତ୍ତି ଏ ମୋ ପୋଷେ କୁଟୁମ୍ବ (୭) | ୭ |
| | ୪ | ଦଶହରା ଛୁଟି | |
| ନଭେମ୍ବର | ୧ | ଜୀବ ନିର୍ଜୀବ (୬) | ୬ |
| | ୨ | ଜୀବ ନିର୍ଜୀବ (୬) | ୬ |
| | ୩ | ଉଦ୍ଭିଦର ବିଭିନ୍ନ ଅଂଶ (୬) | ୬ |
| | ୪ | ଷାଣ୍ମାସିକ ପରୀକ୍ଷା | |
| ଡିସେମ୍ବର | ୧ | ଉଦ୍ଭିଦର ବିଭିନ୍ନ ଅଂଶ (୬) | ୬ |
| | ୨ | ପ୍ରାଣୀର ଶରୀର ଗଠନ ଓ ଖାଦ୍ୟାଭ୍ୟାସ (୬) | ୬ |
| | ୩ | ପ୍ରାଣୀର ଶରୀର ଗଠନ ଓ ଖାଦ୍ୟାଭ୍ୟାସ (୬) | ୬ |
| | ୪ | ଧାନକଟା ଛୁଟି | |
| ଜାନୁଆରୀ | ୧ | ପ୍ରାଣୀର ଶରୀର ଗଠନ ଓ ଖାଦ୍ୟାଭ୍ୟାସ (୩)<br>ପୂର୍ବ ପାଠର ଆଲୋଚନା (୨) | ୫ |
| | ୨ | ପଡ଼ି ଯାଇଥିଲା ସର୍କସ ଦେଖି (୬) | ୬ |
| | ୩ | ପଡ଼ି ଯାଇଥିଲା ସର୍କସ୍ ଦେଖି (୪)<br>ଚତୁର୍ଥ ଏକକ ପରୀକ୍ଷଣ | ୪ |
| | ୪ | ପଡ଼ି ଯାଇଥିଲା ସର୍କସ ଦେଖି (୩)<br>ବସ୍ତୁର ଗୁଣ ଓ ଧର୍ମ (୩) | ୬ |



Digitized by PPRACHIN, SOA

| ମାସ | ସପ୍ତାହ | ପ୍ରସଙ୍ଗ | ପିରିୟଡ୍ |
|---|---|---|---|
| ଫେବୃଆରୀ | ୧ | ବସ୍ତୁର ଗୁଣ ଓ ଧର୍ମ (୮) | ୮ |
| | ୨ | ବସ୍ତୁର ଗୁଣ ଓ ଧର୍ମ (୮) | ୮ |
| | ୩ | ହାତୀ ଖୋଜିଲା ପାଣି (୬) | ୬ |
| | ୪ | ହାତୀ ଖୋଜିଲା ପାଣି (୪)<br>ପଞ୍ଚମ ଏକକ ପରୀକ୍ଷଣ | ୪ |
| ମାର୍ଚ୍ଚ | ୧ | ହାତୀ ଖୋଜିଲା ପାଣି (୮) | ୮ |
| | ୨ | ହାତୀ ଖୋଜିଲା ପାଣି (୩)<br>ପୃଥିବୀର ଜନ୍ମ (୫) | ୮ |
| | ୩ | ପୃଥିବୀର ଜନ୍ମ (୫)<br>ପୁରାତନରୁ ନୂତନ (୧) | ୬ |
| | ୪ | ପୁରାତନରୁ ନୂତନ (୪)<br>ଷଷ୍ଠ ଏକକ ପରୀକ୍ଷଣ | ୪ |
| ଏପ୍ରିଲ୍ | ୧ | ଶିକାର ଖୋଜା (୫)<br>ମାନଚିତ୍ର ଅଧ୍ୟୟନ (୨) | ୭ |
| | ୨ | ମାନଚିତ୍ର ଅଧ୍ୟୟନ (୨)<br>ଆମ ଜିଲା (୬) | ୮ |
| | ୩ | ପୂର୍ବ ପାଠର ଆଲୋଚନା (୬) | ୬ |
| | ୪ | **ବାର୍ଷିକ ପରୀକ୍ଷା** | |
| ମଇ | | ପରିବେଶରୁ ମିଳୁଥିବା ବିଭିନ୍ନ ଉପାଦାନ ସାହାଯ୍ୟରେ ଦାନ୍ତ ଘଷା ପାଉଡର୍ ପ୍ରସ୍ତୁତି<br>ପରିଷ୍କାର ପରିଚ୍ଛନ୍ନତା, ବ୍ୟାୟାମ୍, ବିଦ୍ୟାଳୟରେ ଅନୁଷ୍ଠିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ଶୃଙ୍ଖଳା ରକ୍ଷା | |



Digitized by PPRACHIN, SOA

